# କିଂବଦନ୍ତି କବିତା

ରଚନା
**ଶ୍ରୀ ନରସିଂହ ମିଶ୍ର**

ପ୍ରକାଶନ ଉପଦେଷ୍ଟା
ଶ୍ରୀ ବିନୋଦ ବିହାରି ବିଶୋଇ
ମୋବାଇଲ୍ : ୯୯୩୭୬୯୪୭୮୧

ପ୍ରକାଶକ :
**ପବ୍ଲିଶିଂ ହାଉସ୍**
ଏନ୍-୬/୪୨୮, ଆଇ.ଆର୍.ସି. ଭିଲେଜ୍, ନୂଆପଲ୍ଲୀ, ଭୁବନେଶ୍ୱର-୧୫
ଫୋନ୍ ନଂ.-୨୫୫୨୦୯୧

**ପ୍ରଥମ ପ୍ରକାଶ**— ୨୦୧୧

ମୁଦ୍ରଣ :
**କ୍ରିଏଟିଭ୍ ଅଫସେଟ୍**
ଏନ୍-୬/୪୨୮, ଆଇ.ଆର୍.ସି. ଭିଲେଜ୍, ନୂଆପଲ୍ଲୀ, ଭୁବନେଶ୍ୱର-୧୫
ଫୋନ୍ ନଂ.-୨୫୫୨୦୯୧

**ମୂଲ୍ୟ : ଟ.୧୫୦.୦୦**

**KIMBADANTI KAVITA**

*By :*
**Sri Narasinha Mishra**

*Publisher's Adviser :*
**Sri Binod Bihari Bisoi**
Mob. : 9937694781

*Publisher :*
**Publishing House**
N-6/428, I.R.C. Village, Nayapalli, Bhubaneswar-15
Phone : 2552091

*Printer :*
**Creative Offset**
N-6/428, I.R.C. Village, Nayapalli, Bhubaneswar-15

First Edition—2011

**Price : Rs. 150.00**

Published by Lizashree Bisoi on behalf of Publishing House
N-6/428, IRC Village, Nayapalli, Bhubaneswar-751015, Odisha

# ମୁଖବନ୍ଧ

ଜନଶ୍ରୁତିକୁ 'କିଂବଦନ୍ତି' କୁହାଯାଏ । ଏହାକୁ ଉପକଥା ବା ଲୋକକଥା (Folk - tale) କହିବାର ଯାଥାର୍ଥ୍ୟ ଅଧିକ । ସାଧାରଣତଃ ଲୋକମାନେ, କୌଣସି ବିଶେଷ ଘଟଣା ଉପରେ ଯାହା କହନ୍ତି, ତାହା ପୂର୍ବ ପ୍ରଚଳିତ ଜନଶ୍ରୁତିର ଅନୁସରଣରେ କହିଥାନ୍ତି । 'କିଂବଦନ୍ତି' ବା କ'ଣ କୁହାଯାଇଛି, ଓ ଏହାର ବିଷୟବସ୍ତୁ, କାଳୋତ୍ତୀର୍ଣ୍ଣ ତଥା କାଳୋଚିତ ମଧ୍ୟ ।

କୌଣସି ଏକ ସଭ୍ୟତାର ବିଭିନ୍ନ ଘଟଣାପ୍ରବାହ ମଧ୍ୟରେ ଯାହା ବିଶେଷ ଧ୍ୟାନ ଆକର୍ଷଣକାରୀ, ତାହା ପ୍ରଥମେ ଜନଶ୍ରୁତିରେ ରହି, ପରେ ଲୋକକଥାରେ ପରିଣତ ହୋଇଯାଏ ଏବଂ ତାହା କୁହାଚାଲିଥାଏ ଯୁଗଯୁଗ ଧରି । ନିର୍ଦ୍ଦିଷ୍ଟ ଜାତିର ସାହିତ୍ୟ, ଧର୍ମ, ଦର୍ଶନ, ଇତିହାସ, ସଭ୍ୟତା ତଥା ଜନଜୀବନକୁ ପ୍ରଭାବିତ କରିଥାଏ କିଂବଦନ୍ତି । ଏହା କପୋଳକଳ୍ପିତ ଅଳସ ମୁହୂର୍ତ୍ତର ଆଲେଖ୍ୟ ନୁହେଁ । ସତ୍ୟକୁ ଆଶ୍ରୟ କରି ବିଶ୍ୱାସରେ ଏହା ବିପୁଳିତ ହୋଇଥାଏ ।

କିଂବଦନ୍ତିକୁ ଜନଶ୍ରୁତି ଓ ଜନସ୍ମୃତିରୁ ଆହରଣ କରାଯାଇ, ସାହିତ୍ୟର ବିଭିନ୍ନ ବିଭାଗରେ, ବହୁ ବର୍ଣ୍ଣରେ ମଣ୍ଡିତ କରାଯାଇଥାଏ । ଏହାକୁ ଆଧାର କରି, ଉପନ୍ୟାସ, କ୍ଷୁଦ୍ରଗଳ୍ପ, ଶିଶୁସାହିତ୍ୟ, କବିତା, ନାଟକ ପ୍ରଭୃତି ରଚନା କରାଯାଇପାରେ । କିଂବଦନ୍ତି, ଇତିହାସର ଆଧାରଶିଳା ଏହାକୁ ଛାଡ଼ି ଇତିହାସର ପ୍ରାଣପ୍ରତିଷ୍ଠା ସମ୍ଭବନୁହେଁ ।

ଓଡ଼ିଆ ସାହିତ୍ୟରେ ଧର୍ମପଦ, କଳାପାହାଡ଼, ଦାସିଆ ବାଉରି, ବନ୍ଧୁମହାନ୍ତି ପ୍ରଭୃତି ଚରିତ୍ରଗୁଡ଼ିକର ବର୍ଣ୍ଣନା କିଂବଦନ୍ତିମୂଳକ । ସେହିପରି ଓଡ଼ିଆ ଜନଜୀବନ ଓ ସାହିତ୍ୟକୁ ଗଭୀର ଭାବରେ ପ୍ରଭାବିତ କରିଥିବା ବ୍ୟକ୍ତିବିଶେଷ ଯଥା ଜୟଦେବ, ଭାଗବତକାର ଜଗନ୍ନାଥ ଦାସ, ଶୂଦ୍ରମୁନି ସାରଳାଦାସ, ଶ୍ରୀଚୈତନ୍ୟ, ଉତ୍କଳମଣି ଗୋପବନ୍ଧୁ ଦାସ, ବାରିଷ୍ଟର ମଧୁସୂଦନ ଦାସ ପ୍ରଭୃତି ଏ ଜାତିର କିଂବଦନ୍ତି ପୁରୁଷ । ମଧ୍ୟଯୁଗୀୟ ବହୁ ପ୍ରତିଭାଧର ଏହି ସମ୍ମାନରେ ସମ୍ମାନିତ ।

ବିଭିନ୍ନ ସ୍ଥାନର ମାହାତ୍ମ୍ୟ ଉପରେ ବହୁ କଥା, ଉପକଥା, ଜନଶ୍ରୁତି ମଧ୍ୟରେ କାଳ କାଳ ଧରି ବଞ୍ଚି ରହିଛି । କାଳିଜାଇର କାହାଣୀକୁ କିଂବଦନ୍ତିରୁ ସାଉଁଟି ଆଣି କବି ଗୋଦାବରୀଶ ମିଶ୍ର ଯେଉଁ 'କାଳିଜାଇ' କବିତାଟିକୁ ରଚନା କରିଛନ୍ତି, ତାହା ଓଡ଼ିଆ ସାହିତ୍ୟରେ ତାଙ୍କର ଏକ ଅନବଦ୍ୟ କୃତି । ସ୍ଥାନ ମାହାତ୍ମ୍ୟକୁ ନେଇ ବିପୁଳ ଲୋକକଥା ଅଛି, ତାହାକୁ ନେଇ ସମୃଦ୍ଧ ସାହିତ୍ୟ ସୃଷ୍ଟି କରାଯାଇପାରିବ । ଅନେକ ଓଷା ବ୍ରତ ସ୍ଥାନ ମାହାତ୍ମ୍ୟକୁ ନେଇ ପାଳିତ ହୁଏ । ଯେପରି ରାମଚଣ୍ଡୀଙ୍କ ପାଖରେ 'ହାଣ୍ଡିଭଙ୍ଗା ଯାତ ଓଷା, ପ୍ରଭୁ ଜଗନ୍ନାଥଙ୍କ ଅନସର

ଘରେ ପ୍ରବେଶ କାଳରେ, ପ୍ରଭୁ ଅଲାରନାଥଙ୍କ ଦର୍ଶନ ଓ ତାଙ୍କର କ୍ଷୀରୀ ଭୋଗର କାହାଣୀ, 'କ୍ଷୀରୀଖିଆ ଠାକୁର କଥା' ସ୍ଥାନ ମାହାତ୍ମ୍ୟରୁ ସୃଷ୍ଟି ହୋଇଛି । ଏହିପରି ଓଡ଼ିଶାର ବିଭିନ୍ନ ପୀଠର କାହାଣୀ ବିଶେଷତଃ ପଶ୍ଚିମ ଓଡ଼ିଶାର ନୃସିଂହନାଥ, ହରିଶଙ୍କର, ଚକାପାଦର ଦକ୍ଷିଣାବର୍ତ୍ତ ମନ୍ଦିର, କୋରାପୁଟର ଗୁପ୍ତେଶ୍ୱର ପ୍ରଭୃତି ସ୍ଥାନ ମାହାତ୍ମ୍ୟ କିଂବଦନ୍ତି ମୂଳକ ।

ଅତୀତର ବିଭିନ୍ନ ନୀତିପୁଷ୍ଟ କାହାଣୀ କିଂବଦନ୍ତିରେ ପରିଣତ ହୋଇ ଜନ ଜୀବନକୁ କାଳ କାଳ ଧରି ପ୍ରଭାବିତ କରିଆସିଛି । ପ୍ରତ୍ୟେକ ଦେଶର, ପ୍ରତ୍ୟେକ ଜାତିର ସାହିତ୍ୟରେ ଭରି ରହିଛି ବହୁ କିଂବଦନ୍ତିମୂଳକ ଲୋକକଥା । ତାହା ସାହିତ୍ୟର ରତ୍ନଭଣ୍ଡାର କହିଲେ ଅତ୍ୟୁକ୍ତି ହେବ ନାହିଁ । ପ୍ରାନ୍ତୀୟ ସାହିତ୍ୟ ତାକୁଇ ନେଇ ପରିପୁଷ୍ଟ ।

କିଂବଦନ୍ତି ଭିତରେ ଆମେ ଅତୀତକୁ ଭେଟୁ । ଅତୀତ ସହିତ ମାନସିକ, ଭାବଗତ, ତଥା ଆବେଗିକ ସମ୍ପର୍କ ରଖୁ । ଜାଣିପାରୁଛୁ ଅତୀତର ସାମାଜିକ ଅବସ୍ଥା, ବିଧିବ୍ୟବସ୍ଥା, ପରମ୍ପରା, ସଂସ୍କୃତି ଓ ରିତିନୀତି । ପୂର୍ବଜ ମାନଙ୍କର ଭାବଭୂମିର ଚିତ୍ର, ଆମକୁ ବିହ୍ୱଳ କରେ । ଏକ କଳାତ୍ମକ ସହବନ୍ଧନ ସୃଷ୍ଟି କରିବାରେ ଏହା ସହାୟକ ହୁଏ । ତେବେ ଜନଶ୍ରୁତି ଓ ଲୋକକଥାର ଆଦିମ ଆବରଣ, ଆଜିର ବିକାଶମୁଖୀ ଆଲୋକିତ ମନପାଇଁ ଆକର୍ଷଣୀୟ ନ ହେଲେ ମଧ୍ୟ ତାହା ଅପରିହାର୍ଯ୍ୟ ।

ମୋର ଏହି 'କିଂବଦନ୍ତି କବିତା'ରେ ସନ୍ନିବେଶିତ କବିତାଗୁଡ଼ିକର ବିଷୟବସ୍ତୁ ବିଦଗ୍ଧ ପାଠକମାନଙ୍କର ଅପରିଚିତ ନୁହେଁ । ମୁଁ ଏଗୁଡ଼ିକୁ ସମ୍ବାଦପତ୍ର, ବିଭିନ୍ନ ପତ୍ରପତ୍ରିକା, ତଥା ଲୋକମୁଖରୁ ସଂଗ୍ରହ କରିଛି । ଏଥିରେ ମୋର ନିଜସ୍ୱ ସୃଷ୍ଟି ସମ୍ଭାର କିଛି ନାହିଁ । ଯାହା ମୋତେ ଆନନ୍ଦ ଦେଇଛି ମୁଁ ତାକୁ ଲେଖନୀ ମୁନରେ ସାଉଁଟି ଆଣି ରସାଳ କବିତା ପାତ୍ରରେ ପରିବେଷଣ କରିଛି ମାତ୍ର । ତେବେ ମୋ ଭିତରେ ଭାବସଙ୍ଗମ କରାଇଥିବା ପତ୍ରପତ୍ରିକାର ସମ୍ପାଦକ ମାନଙ୍କୁ ମୁଁ ସ୍ନେହସ୍ନିଗ୍ଧ କୃତଜ୍ଞତା ଜ୍ଞାପନ କରୁଛି । ଆଜିର କବିତାବିମୁଖୀ ସାଧାରଣ ପାଠକ ମନରେ 'କିଂବଦନ୍ତି କବିତା'ଗୁଡ଼ିକ ରୁଚି ସୃଷ୍ଟି କରିବା ଦିଗରେ ସହାୟକ ହେଲେ, ମୋ ଶ୍ରମ ସାର୍ଥକ ବୋଲି ଭାବିବି ।

ତା ୮.୭.୨୦୧୦ — ବିନୀତ

ଭୁବନେଶ୍ୱର — **ନରସିଂହ**

# ସୂଚୀପତ୍ର

# ଜୟଦେବ

ମହାନ୍ ପଣ୍ଡିତ 'ଦେବଶର୍ମ୍ମା' ଦିନେ
ସସ୍ତ୍ରୀକ ଶ୍ରୀକ୍ଷେତ୍ରେ ଆସି
ଶ୍ରୀ ଜଗନ୍ନାଥଙ୍କ ପଦେ ପ୍ରଣମିଲେ
ଗୁହାରିଲେ ଦୁଃଖ ରାଶି ।
"ହେ ନାଥ ଜଗତ ନାଥ !
ମୁକ୍ତ କର ପ୍ରଭୁ । ଅନପତ୍ୟ ଦୋଷୁ
କର ହେ ସନ୍ତାନ ପ୍ରାପ୍ତ ।
ତୁମ ଦାନ, ପ୍ରଭୁ ତୁମପଦେ ଅରପିବୁ,
ପ୍ରଥମ ସନ୍ତାନ ହେବ ତୁମ ଧନ
ତୁମ ଯଶ ପ୍ରଚାରିବୁ ।"
ହସିଲା ସଂସାର ଦେବଶର୍ମ୍ମାଙ୍କର
କନ୍ୟାରତ୍ନ ହେଲା ଜାତ
'ନିଃସନ୍ତାନ ଦୋଷ' ଦୂର ହୋଇଗଲା
ଲଭି କୃପା ଜଗନ୍ନାଥ ।
ଅତି ସରାଗରେ ଶ୍ରଦ୍ଧା ମମତାରେ
ନାମ ଦେଲେ 'ପଦ୍ମାବତୀ'
ପଙ୍କରୁ ଫୁଟିଛି ପଙ୍କଜିନୀ ଟିଏ
ଅନୁପମା ରୂପବତୀ ।

ପିଠିରେ ଆଣିଲା କେତୋଟି ଭାଇଙ୍କୁ
ଉଛୁଳି ଉଠିଲା କୋଳ
ଶିଶୁ କଳରୋଳ ଅମୃତ ବଚନେ
ଚହଲି ଉଠିଲା ଘର ।
ଦିନ ବିତିଗଲା ବୟସ ବଢିଲା
ବହିଲା ବସନ୍ତ ବାଆ
ବିସ୍ମୃତି ଗର୍ଭରୁ ସ୍ମୃତିର ବାୟସ
କଲା କାନେ କାଆ କାଆ ।
ମନେ ପଡ଼ିଗଲା ପ୍ରତିଶ୍ରୁତି କଥା
ମନ୍ଦିରେ ଗଲେ ସେ ଚଳି
ସମର୍ପି ଦେଲେ ସେ ଅଲିଅଳୀ ଝିଅ
ପ୍ରଭୁ ପଦେ ଲୟକରି ।
ଶୂନ୍ୟ ବାଣୀ ହେଲା, "ଭକତି ନୈବେଦ୍ୟ
ଗ୍ରହଣ କରୁଛି ତୁମ,
ମୋ ପ୍ରିୟ ଭକତ ଜୟଦେବ ବିପ୍ରେ
କର କନ୍ୟା ସମର୍ପଣ-
ଅଭିନ୍ନ ହୃଦୟ ମୋର,
ଶୁଭଦା କନ୍ୟାର ସେ'ତ ଅଭିପ୍ରେତ ବର ।"
ଦେବଶର୍ମା ପଥ ପଚାରି ପଚାରି
ଉପଗତ ହେଲେ ତହିଁ
ପର୍ଣ୍ଣକୁଟୀରରେ ବସିଛନ୍ତି ବିପ୍ର
ଧ୍ୟାୟୀ ସେ ଜଗତ ସାଇଁ ।

ସମ୍ଭାଷଣ କରି କହିଲେ, "ହେ ଦେବ !
ପ୍ରଭୁଙ୍କ ନିର୍ଦ୍ଦେଶ ପାଇ
ଆସିଅଛି କନ୍ୟା 'ପଦ୍ମାବତୀ' କୁ ମୁଁ
କରେ ସମର୍ପିବା ପାଇଁ ।
ଘେନ ତାର ଅର୍ଘ୍ୟ ଥାଳି,
ସାଦରେ ଅନ୍ତର ଭରି ।
ଜୟଦେବ ଚାହିଁ ବିସ୍ମିତ ହୋଇଲେ
ନିମିଳିତ ହେଲା ନେତ୍ର
ଏ'କି ଥିଲା ଭିକ୍ଷା ଦରିଦ୍ରର,ପ୍ରଭୁ !
ବିଚାର କେଡ଼େ ବିଚିତ୍ର ।
ଘେନୁଛି ଏ ସମ୍ପ୍ରଦାନ,
'ଦୁଃଖ ଦୀକ୍ଷା ଦେଇ ଦୀକ୍ଷିତ କରିଲ
ହେଉ ତବ ଇଚ୍ଛା ପୂର୍ଣ୍ଣ ।
ପଦ୍ମାବତୀ କର ଧରି
କହିଲେ, ଆଜିଠୁ ହୋଇଲ ତୁମେ ଗୋ !
ମୋ' ପର୍ଣ୍ଣକୁଟୀର ଶିରୀ ।

୧୪.୦୪.୨୦୦୮
ଭୁବନେଶ୍ୱର

# କର୍ମଫଳ

ଥିଲେ ଜଣେ ବିଦ୍ୱାନ୍ ପଣ୍ଡିତ
ଜ୍ଞାନୀ ମାନୀ, ଯଶ ତାଙ୍କ-
ହେଲା ପ୍ରସାରିତ ।
ଲୋକ ସମାଜରେ, ଭିତରେ ବାହାରେ ।

ସେଥିଲେ ଫୁଲରସିଆ ବୃକ୍ଷବନ୍ଧୁ ଜଣେ
ଗଢ଼ିଲେ ଉଦ୍ୟାନଟିଏ ଅତ୍ୟନ୍ତ ଯତନେ,
କେତେ ପୁଷ୍ପଲତା ବୃକ୍ଷ କରିଲେ ରୋପଣ
ଉଦ୍ୟାନ ହସିଲା ଯଥା ନନ୍ଦନକାନନ ।

ତା' ବୁକୁରେ ଥିଲା ଯେଉଁ ସବୁଜ ସମ୍ଭାର
ଗାଈଟିଏ ଚହେଁ ନିତି ହୋଇ ଲୋଭାତୁର,
ସୁଯୋଗ ଖୋଜି ସେ ଦିନେ ପଶିଗଲା ଧୀରେ
ଖାଇଲା କେତୋଟି ଗଛ ଭୋକ ବିକଳରେ ।

କ୍ରୋଧରେ କମ୍ପିତ ହୋଇ ଠେଙ୍ଗା ହାତେ ଧରି
ପ୍ରହାରିଲେ ଗାଈଟିକୁ ପଣ୍ଡିତ ମୁରାରି,
ଠେଙ୍ଗା ବାଜି ଥାନ ଅଥାନରେ,
ଗାଈଟିର ମୃତ୍ୟୁହେଲା ବଗିଚ୍ଚ ଭିତରେ ।

ଦଉଡ଼ି ଆସିଲେ ଲୋକେ, ପାଟିକରି
କି ହେଲା... କି ହେଲା ?
ଗୋବଧ କରିଲେ ଦେଖ,
ଏ' ପଣ୍ଡିତ କେଡ଼େ ସୃଷ୍ଟିଛଡ଼ା !
ପଣ୍ଡିତେ କହିଲେ, କ୍ରୋଧେ,
"ମୋତେ ତୁମେ ନିନ୍ଦ ଅଯଥାରେ,
ଗୋବଧ କରିନି ମୁହିଁ,
କରିଛନ୍ତି ଇନ୍ଦ୍ର କ୍ରୋଧ ଭରେ ।
ନେଇ ମୋର ହାତର ସାହାଯ୍ୟ
ସେ ପରା ହାତ ଦେବତା, କେ ଲଙ୍ଘିବ
ଆଦେଶ ଅଲଙ୍ଘ୍ୟ !
ସମସ୍ତେ ଆଶ୍ଚର୍ଯ୍ୟ ହୋଇ ରହିଁଲେ ମୁହଁକୁ
କେ' କିଛି କହିଲେ ନାହିଁ ଗର୍ବୀ ବ୍ରାହ୍ମଣଙ୍କୁ,
ଗଭୀର ଦୁଃଖରେ,
ବାହୁଡ଼ି ଆସିଲେ ସର୍ବେ ନିଜ ନିଜ ଘରେ ।
ତଥିପରେ-
ବ୍ରାହ୍ମଣ ବେଶରେ ଇନ୍ଦ୍ର ହେଲେ ଉପଗତ,
ସମ୍ଭାଷିଲେ ପଣ୍ଡିତଙ୍କୁ, କରିଦେଲେ ପ୍ରଶଂସା ମୋହିତ ।
କହିଲେ, "ଆପଣଙ୍କର ଏ ଉଦ୍ୟାନ
କେଡ଼େ ଶୋଭାମୟ,
ବୃକ୍ଷ ବୀଥି ପୁଷ୍ପଲତା
କା' ହୃଦୟ ନ କରିବ ଜୟ ।
ଏ' ଉଦ୍ୟାନ ମାଳିକୁ ମୁଁ ରହେଁ ଦେଖିବାକୁ
ଡକାଇ ଦିଅନ୍ତୁ ତା'ରେ ଏଥି ଆସିବାକୁ,
ନମସ୍କାର କରିବି ମୁଁ ତାକୁ ।"

"ଶୁଣନ୍ତୁ ବ୍ରାହ୍ମଣ ଶ୍ରେଷ୍ଠ ଏ ଉଦ୍ୟାନ ରଚିଛି ମୁଁ ନିଜେ
ମାଳିହୀନ ଏ ଉଦ୍ୟାନେ ପ୍ରତିଦିନ ମୁହିଁ ମାଳି ସାଜେ,
ଯା'କିଛି ହୋଇଛି ଏଥି, ମୋ ହାତରେ ମୁଁ କରିଛି ସବୁ
ମୋ' ହାତ କରଣି ଏତ
ଅଟେ ମୁହିଁ ମୋ ହାତର ପ୍ରଭୁ ।"

"ଭାରି ଖୁସି ହେଲି ଶୁଣି, ନିଜ ହାତ ନିଜେ ପ୍ରଭୁ ବୋଲି
ଯେ ବୁଝିଛି ଏ ସତ୍ୟକୁ, ତା'ର ଦୁଃଖ ଆପେ ଯିବ ଚାଲି ।
କା' ହାତର ପ୍ରଭୁ କେବେ ଅନ୍ୟ କେହି ନୁହେଁ,
ଇନ୍ଦ୍ରଦେବ ନାମକିଆଁ ଅଯଥାରେ ଉଚ୍ଚାରିଲେ ମୁହେଁ ?
ହେ ବ୍ରାହ୍ମଣ ! ଗୋ ବଧ ପାପର
ପ୍ରାୟଶ୍ଚିତ କର ବେଗେ ପ୍ରାୟଶ୍ଚିତ କର ।
କର୍ମଫଳ ଭୋଗିବାକୁ ହେବ
ନିଜ କୃତ କର୍ମଫଳ ଆଉ କେ' ଭୋଗିବ ?"

୧୭.୦୪.୨୦୦୮
ଭୁବନେଶ୍ୱର

# ଶ୍ରୁତକୀର୍ତ୍ତି

ସର୍ବ ଗୁଣାଧାର ଦୟାର ସାଗର
ଶ୍ରୁତକୀର୍ତ୍ତି ନୃପବର
ବିଦର୍ଭ ରାଇଜେ ପାଳୁଥିଲେ ସୁଖେ
ପ୍ରଜାକୁଳ ନିରନ୍ତର ।

ପ୍ରଜାଙ୍କର ଥିଲେ ମାତାପିତା ପରି
ସ୍ନେହ ସେବା କ୍ଷମାମୟ
ରାଜ୍ୟରେ ନଥିଲା ଦୈବୀ ଦୁର୍ବିପାକ
ଅବା ପ୍ରାକୃତିକ ଭୟ ।
ଚତୁର୍ଦ୍ଦିଗ ଥିଲା ସବୁଜ ସୁନ୍ଦର
ବୃକ୍ଷଲତା ପୁଷ୍ପବନ
ଗହଳ କୁଞ୍ଜରୁ ପକ୍ଷୀର କାକଳି
ଶୁଭୁଥିଲା ଘନ ଘନ
ସତେ ପାରିଜାତ ବନ !

ବନର ଉର୍ବଶୀ- ହରିଣୀ, ନୃତ୍ୟରେ
ମୁଗ୍ଧ ପଶୁପକ୍ଷୀଗଣ
ଭୁଲିଯାଉଥିଲେ ବୈରୀଭାବ ତାଙ୍କ
ପ୍ରୀତି ପଲ୍ଲବିତ ମନ ।

ସବୁରି ଭିତରେ ଶ୍ରଦ୍ଧା ନଈଟିଏ
ବହୁଥିଲା କୁଳୁକୁଳୁ,
ହିଂସ୍ରଜନ୍ତୁମାନେ ହିଂସ୍ରଭାବ ଭୁଲି
ରହୁଁଥିଲେ ଜୁଳୁଜୁଳୁ ।

ସ୍ୱର୍ଗ ଆସିଥିଲା ନଇଁ,
ବିଦର୍ଭ ରାଇଜ ସ୍ୱର୍ଗ ପାଲଟିଲା
ଶ୍ରୁତକୀର୍ତ୍ତି ପୁଣ୍ୟ ପାଇଁ ।

ବୟସ ଖସିଲା ବୃଦ୍ଧ ହେଲେ ରାଜା
ଶୁଭିଲା ସେପୁରୁ ଡାକ
ପ୍ରିୟ ପ୍ରଜାପୁତ୍ରେ ଡକାଇଲେ ଦିନେ
ଦେଖିବାକୁ ତାଙ୍କ ମୁଖ ।
ସର୍ବେ ହେଲେ ହତବାକ
କିଛି ନ ପାରିଲେ କହି,
ଆଖି ପିଛୁଳାକେ ଟଳି ସେ ପଡ଼ିଲେ
ଉଛୁଳିଲା ଶୋକ ନଈ ।

ଦେବଦୂତ ଆସି ପୁଷ୍ପକ ବିମାନେ
ନେଇଗଲେ ସ୍ୱର୍ଗ ଧାମେ
ସ୍ୱର୍ଗେ, ଦେବତାଙ୍କ ପାଶେ ବସାଇଲେ
ଦେବ ଦିବ୍ୟ ସିଂହାସନେ ।

ଦେବାଙ୍ଗନାମାନେ ଅମୃତ ମଧୁର
ମଣୋହି ପରଷି ମୁଦେ
ସୋମରସ ଦେଲେ ପାନ କରିବାକୁ
ନୃପତି ରହିଁଲେ ଖେଦେ ।
କହିଲେ ଜୀବନେ ପରଶ କରିନି ଯାହା
କରିପାରିବିନି ଗ୍ରହଣ ମୁଁ ଏବେ ତାହା ।

ସ୍ୱର୍ଗର ନର୍ତ୍ତକୀ ନୃତ୍ୟ ଗୀତ ତୋଳି
ମୋହିବାକୁ ଗଲେ ମନ
ବୁଲାଇ ଆଣିଲେ ନନ୍ଦନ ବନ
ପ୍ରୀତି ପାରିଜାତ ବନ ।

ନୟନୁ ବହିଲା ଧାର ଧାର ଲୁହ
ବଢ଼ିଲା ନୃପଙ୍କ ଦୁଃଖ ,
ଶ୍ରୁତକୀର୍ତ୍ତି ରାଜା ବିକଳେ କହିଲେ
ଲୋଡ଼ା ନାହିଁ ସ୍ୱର୍ଗ ସୁଖ ।

ଲୋଡ଼େଁ ନାହିଁ ମୁହିଁ ଏ ଦେବ ବିଳାସ
ମୋକ୍ଷ ମୋର ଲୋଡ଼ା ନାହିଁ,
ମୋ' ମର୍ତ୍ତ୍ୟକୁ ମୋତେ ବାହୁଡ଼ାଇଦିଅ
ହେ ପ୍ରଭୁ ! ଜଗତସାଇଁ !
ମର୍ତ୍ତ୍ୟର ଜୀବନେ ମର୍ତ୍ତ୍ୟର କଷଣେ
ଅଛି ଯେତେ ମାଦକତା
ସେ ଲାଭ ଲୋଭରେ ଜନ୍ମ ନେଇଛନ୍ତି
ମର୍ତ୍ତ୍ୟରେ କେତେ ଦେବତା ।
ତୁମ ପଦେ ଯଦି ସ୍ଥାନ ନ ମିଳିଲା ମୋତେ
ତୁମ ନାମ ପ୍ରଭୁ ଭଜି ନିତି ହୃଦ ଗତେ -
କି ଲାଭ ମିଳିଲା ଏଥେ ?

ବିଷ୍ଣୁଙ୍କ ଇଙ୍ଗିତେ ଦେବଦୂତଗଣ
ନେଇଗଲେ ତାଙ୍କୁ ଆସି
ବିଷ୍ଣୁ ପଦେ ସ୍ଥାନ ପାଇଲେ ନୃପତି
ଦୂର ହେଲା ଦୁଃଖରାଶି ।
ମୋହ ମୁକ୍ତ ହେଲା ମନ,
ବିଷ୍ଣୁ ତେଜ ସାଥେ ମିଶିଗଲା ତାଙ୍କ ପ୍ରାଣ ।
କର୍ତ୍ତବ୍ୟ ପାଳନ ଧର୍ମ ଆଚରଣ
ବିଫଳ ନହୁଏ କେବେ
ଦାନ ପୁଣ୍ୟ ଫଳ ମିଳଇ ଜୀବନେ
ଯଶକୀର୍ତ୍ତି ରହେ ଭବେ ।

୧୦ । ୫ । ୨୦୦୮
ଭୁବନେଶ୍ୱର

# ସମର୍ଥ ରାମଦାସ

କିଏ ଯୋଗୀବର ଦୁଆରେ ଡାକନ୍ତି,
'ଜୟ ଜୟ ରଘୁବୀର ସମର୍ଥ-'
ଗୃହର ଗୃହିଣୀ ଡାକରୁ ଜାଣନ୍ତି
ନୁହନ୍ତି ଆଉକେ, ଯୋଗୀ ସମର୍ଥ-
ରାମଦାସ, ଉଭା କୁଟୀର ଦ୍ୱାରେ,
ଭକତି ଭରେ,
ଭିକ୍ଷା ଅରପନ୍ତି ସନ୍ଥ ଝୁଲାରେ ।

ମରହଟ୍ଟା ବୀର ଛତ୍ରପତି ରାଜା
ଶିବାଜୀଙ୍କର ସେ ଅଟନ୍ତି ଗୁରୁ,
ସାଧୁ ସନ୍ଥ ପାଇଁ ରାଜ ଅନୁଗ୍ରହ
ନୁହେଁ ମହତର, ଭିକ୍ଷା ଠାରୁ ।
ରାମଦାସ ନିତି ଭିକ୍ଷା କରି
ଆନନ୍ଦ ଭରି,
ଜୀବିକା ତୁଲାନ୍ତି ସନ୍ଥର ପଥ ସେ ଅନୁସରି ।
ବୁଲା ଫକୀର ସେ ବୁଲି ବୁଲି ଦିନେ
ଶିବାଜୀଙ୍କ ପୁରେ ଥାପିଲେ ପାଦ
ଡାକ ଶୁଣି ରାଜା ବାହାରି ଆସିଲେ
ଗୁରୁଙ୍କୁ ପ୍ରଣମି ପୂଜିଲେ ପଦ ।
ଭିକ୍ଷା ଦେଲେ 'ଲେଖା କାଗଜ'ଟିଏ
ପଢ଼ିଲେ ମୁନି,
ସାରା ରାଇଜକୁ ସମର୍ପି ଅଛନ୍ତି ଥାଳରେ ପୁଣି ।
ରାମଦାସ ହସି କହିଲେ, ରାଜନ !
ଫକୀରର ରାଜ୍ୟ ହୋଇବ କିସ ?

ତୁମ ରାଜ୍ୟ ତୁମେ ଫେରାଇ ନିଅ ହେ।
ତୁମ ଦାନ, ମନ କରିଛି ତୋଷ ।
କହିଲେ ଶିବାଜୀ, "ହେ ଗୁରୁଦେବ!
ଏ ରାଜ୍ୟ ତବ,
ନାହିଁ ଅଧିକାର ଭୋଗ କରିବାକୁ
ରାଜସିଂହାସନ, ରାଜବିଭବ।

ଆଜିଠାରୁ ଗୁରୁ ଏ ରାଜ୍ୟେ ରାଜା
ମୁଁ ଅଟେ ତାଙ୍କର ପାଳିତ ପ୍ରଜା ।
ଆଦେଶ ମାତ୍ର
ନତ ଶିରେ ତାହା ପାଳନ କରିବ, ଏହା ତା' ବ୍ରତ।

ହସି ଗୁରୁଦେବ କହିଲେ; ତେବେ
ଆଦେଶୁଛି, ରାଜ୍ୟ ଶାସ ହେ ଏବେ।"

ନତନମ୍ର କଣ୍ଠେ କହିଲେ ରାଜନ!
"ପାଳିବି ଏ ରାଜ୍ୟ ଗୁରୁଙ୍କ ନାମେ"
ଗୁରୁ ଖୁସି ହୋଇ ଗେରୁଆ ଝୁଲାଟି
ଅରପିଲେ ତାଙ୍କୁ ଆନନ୍ଦ ମନେ।
କହିଲେ, "କରିବ 'ଗୈରିକ' ଝଣ୍ଡା
ମରହଟ୍ଟା ବୀର 'ଜାତୀୟ ପାତାକା'
ଉଡ଼ାଇ ଚଳିବ, ତୋଳି ତା' ଖଣ୍ଡା।
ଆହେ ଛତ୍ରପତି ଶିବାଜୀ ବୀର !
ସାଦରେ ଏ ଝୁଲା ଗ୍ରହଣ କର ।"

ତା ୧୬.୦୬.୦୯,
ଭୁବନେଶ୍ୱର

# ଶ୍ରୀରାମକୃଷ୍ଣ ପରମହଂସ

ଦକ୍ଷିଣକାଳୀଙ୍କ ମନ୍ଦିର ପ୍ରାଙ୍ଗଣେ
ବସିଥିଲେ "ରାମକୃଷ୍ଣ"
ବେଢ଼ି ରହିଥିଲେ ଭକ୍ତଗଣ ତାଙ୍କୁ
ନୟନ ଭକତି ଦୃଷ୍ଟ ।
ପରମହଂସଙ୍କ ମଧୁମୟବାଣୀ
ନୀତି ପ୍ରୀତିମଖା ଗାଥା
ଶୁଣି ତୋଷମନ ମୁଗ୍ଧ ଭକ୍ତଜନ
ପ୍ରଶମିତ ଭବ ବଥା ।
ଚାହିଁଥାନ୍ତି, ମୁଖେ ସକଳେ ଚାତକ ପରି,
ସତେ ଅବା ମୁଖୁ ମଧୁ ମକରନ୍ଦ
ଧାରା ଯାଉଅଛି ଝରି ।
ଯାଉଥିଲା ଏକ ବାରାଙ୍ଗନା ତୋଳି
ଚପଳ ଚାହାଣି ଠେରା
ରାମକୃଷ୍ଣ ହସି ହକାରି ତାହାକୁ
ସମ୍ବୋଧିଲେ ସ୍ନେହଭରା ।
"ଆମ ଆଡ଼େ କିଆଁ ଆସୁନ "ରମଣୀ"
ଆତୁରେ ଚାହିଁଛି ପଥ,
ଏଡ଼େ ବେଗେ ତୁମେ ଭୁଲିଗଲ ମୋତେ
ଖୋଜେ ପ୍ରାଣ ଅବିରତ ।"

ଲାସ୍ୟହାସ୍ୟମୟୀ କୁରଙ୍ଗୀ ନୟନା
ନୟନେ କହିଲା କିସ
ଭକ୍ତ ରାମକୃଷ୍ଣ ପାନ କରିଥିଲେ
ତା'ନୟନ ପ୍ରୀତି ରସ ।
ବେଢ଼ି ବସିଥିବା ଭକ୍ତଗଣ ଦେଖି
ଏ ଦୃଶ୍ୟ ରହସ୍ୟମୟ
ମନ ବିଚଳିତ ଆକୁଳିତ ପ୍ରାଣ
ତୁଟିଗଲା ଭକ୍ତି ଲୟ ।
ଅଦ୍ଭୁତ ଘଟଣା ଏ କି ?
ଗୁରୁ ରାମକୃଷ୍ଣ ଗଣିକା ଗମନ
କରନ୍ତି, ନ ହୁଏ ଭାବି ।
ମହାଯୋଗୀ ରାମକୃଷ୍ଣ ଭକ୍ତଙ୍କର
ମନକଥା ଜାଣିଯାଇ,
ଡାକିଲେ ମୋ ସାଥେ ଆସ ତୁମେ ସବୁ
ବେଢ଼ା ପରିକ୍ରମା ପାଇଁ ।
'ଭବତାରିଣୀ'ଙ୍କୁ ଭେଟିଲେ ମନ୍ଦିରେ
ପରିକ୍ରମା ପଥ ଶେଷେ
କହିଲେ ମା' ଗୋ ଧନ୍ୟ ହେଲା ନେତ୍ର
ଗଣିକା ରମଣୀ ବେଶେ ।
ମୋହିନୀ ବେଶରେ ବାରଙ୍ଗନା ରୂପେ
ମୋହିଲ ଅନ୍ତର ମମ
ଜଗତଜନନୀ ହେ ଭବତାରିଣୀ !
ଅଧମ ସନ୍ତାନେ କ୍ଷମ ।
ଏତେବେଳେ ସବୁ ଭକତ ବୁଝିଲେ
ଲୀଳାମୟଙ୍କର ଲୀଳା
କ୍ଷମାମୟ ପଦେ କ୍ଷମା ନିବେଦିଲେ
ନେତ୍ରରାଜି ଅଶ୍ରୁବୋଳା ।

୧୯/୬/୨୦୦୮, ଭୁବନେଶ୍ୱର

# ସତ୍ୟକାମ ଜାବାଳ

ବସିଥିଲେ ମୁନି ଆଶ୍ରମ ପ୍ରାଙ୍ଗଣେ
ମୁନିମଣ୍ଡଳୀଙ୍କ ମଧ୍ୟେ
ଶିଷ୍ୟଗଣ ତାଙ୍କୁ ବେଢ଼ି ରହିଥିଲେ
ଜିଜ୍ଞାସୁ ନୟନ ପାତେ ।
ଆଲୋଚନାରତ ଥିଲେ ଗୁରୁଦେବ
ବେଦର ଗହନ ତତ୍ତ୍ୱ
ନବୀନ ସନ୍ନ୍ୟାସୀମାନଙ୍କୁ ସରଳେ
କରୁଥିଲେ ବୋଧାୟିତ ।
ଏତେବେଳେ ଏକ ଦିବ୍ୟ ରୂପବନ୍ତ
ବାଳକ ହୋଇଲା ଉଭା
ନମ୍ର ନତ ଶିରେ ଗୁରୁଙ୍କ ପୟରେ
ପ୍ରଣମିଲା ମୁନି ସଭା ।
କୁତୂହଳେ ସର୍ବେ ଚାହିଁ ରହିଥିଲେ ମୁଖେ,
ଚାହିଁଛି ବାଳକ ଆଚାର୍ଯ୍ୟଙ୍କ ଅଭିମୁଖେ ।
ଆଶୀର୍ବାଦ ଦେଇ, ମଙ୍ଗଳଧାୟୀ
ପଚାରିଲେ ଗୁରୁଦେବ
ଏକାକୀ ଏ ବନେ ଆସିଛ କାହିଁକି
କିସ ଅଭିପ୍ରାୟ ତବ ?
ତୁମ ନାମ କ'ଣ, କିଏ ମାତା ପିତା
କୁଳ ଗୋତ୍ର ପରିଚୟ
ଦିଅ ଆହେ ବତ୍ସ ! ଜାଣିବାକୁ ଚାହେଁ,
ନରଖ ମନେ ସଂଶୟ ।

ଏତ ଗୁରୁକୁଳ ନୀତି,
ପରିଚୟ ପ୍ରକରଣ ପ୍ରସଙ୍ଗରେ
ଗ୍ରହଣୀୟ ଏହି ରୀତି ।"
"ମୋ ମାତା 'ଜାବାଳୀ' ମୋ ନାମ 'ଜାବାଳ'
ଏତିକି ଜାଣିଛି ପ୍ରଭୁ !
ଯାଉଅଛି ଫେରି ବୁଝିଆସିବି ମୁଁ
ମୋ ମାଆଙ୍କ ଠାରୁ ସବୁ ।"
ସେ ମଉନ ମନେ ମାତା ସନ୍ନିଧାନେ
ହେଲା ଉପଗତ ଯାଇ
ପଚାରିଲେ ମାଆ, 'କି କହିଲେ ମୁନି ?'
କୋଳେ ତାକୁ ଟେକିନେଇ ।"

"କିଏ ମୋର ପିତା କୁହ ଗୋ ଜନନୀ
କୁଳ ଗୋତ୍ର ଆମ କ'ଣ ?
ପଚାରିଲେ ମୁନି, କହିଲି ଜାଣିନି
ମାତାଙ୍କୁ ପଚାରି ପୁଣ-
ନିବେଦିବି ଗୁରୁ ପଦେ,
କୁହ ଆଗୋ ମା' ! ମୋତେ ।"
"ଭରା ଯଉବନେ କେତେ ମୁନି ଜନେ
ଭେଟିଥିଲେ ମୋର ପୁରେ
କିଏ ତୋର ପିତା କିପରି କହିବି
କୁହ ଯାଇ ମୁନିବରେ ।
ଯୋଗ ବଳେ ସିଏ ସବୁ ତ ପାରିବେ ଜାଣି,
ତେବେ ଶିକ୍ଷା ଦେବେ, ସମ୍ଭ୍ରାନ୍ତ ତୋତେ ମଣି ।"

ଜାବାଳ ଫେରିଲା ବନାଶ୍ରମେ ପୁଣି
ମୁନିଙ୍କୁ ପ୍ରଣମି ପଦେ
ଜନନୀଙ୍କ କଥା କହିଲା ବିନୟେ
ଆଶେଷିଲେ ମୁନି ମୁଦେ ।

ଧ୍ୟାନମଗ୍ନ ମୁନି ନିମିଷକେ ପୁଣି
ଜାଣିଗଲେ ସବୁ କଥା
ଆଶୀର୍ବାଦ ଦେଇ କହିଲେ, "ହେ ବତ୍ସ
ମହାମୁନି ତୁମ ପିତା ।
ସଦ୍ ବଂଶଜ ତୁମେ ସତ୍‌ପଥ ପଥିକ
ତୁମେ 'ସତ୍ୟକାମ' ବୀର
ଏଇନାମେ ତୁମେ ହେବ ପରିଚିତ
ହେ 'ସତ୍ୟକାମ ଜାବାଳ' ।
ଏ ଆଶ୍ରମେ ରହି କର ଆଚରଣ
ବେଦ ଅଧ୍ୟୟନ କର୍ମ
ଗ୍ରହଣ କରୁଛି ମୋର ଶିଷ୍ୟ ରୂପେ
ପ୍ରାପ୍ତ ହୁଅ ବେଦବ୍ରହ୍ମ ।"

ତା ୭ । ୭ । ୨୦୦୮
ଭୁବନେଶ୍ୱର

# ବନବିଦ୍ୟାଳୟ

ପ୍ରାଚୀନ ଭାରତ ଗୁରୁକୁଳାଶ୍ରମ
ବିଶ୍ୱରେ ଥିଲା ବିଖ୍ୟାତ
ମୁନି ଋଷି ଗୁରୁ ଆଚାର୍ଯ୍ୟ ଗହଣେ
ବନାଶ୍ରମେ ଉପଗତ–
ହେଉଥିଲେ ଶିଷ୍ୟଗଣ,
ପାଉଥିଲେ ଶିକ୍ଷା ନେଉଥିଲେ ଦୀକ୍ଷା
ନୀତି ନିଷ୍ଠା କରି ପଣ ।
ଉତ୍କଳମଣି ବିଚାରିଲେ ଦିନେ
ଭାଗର୍ବୀ କୂଳେ ବସି,
ଖୋଲିବେ ଗୋଟିଏ ବନବିଦ୍ୟାଳୟ
ଗୁରୁ କୁଳାଶ୍ରମ ରଚି,
ଜ୍ଞାନୀ ମାନୀ ଗୁଣୀ ଜନ
ଆଚାର୍ଯ୍ୟ ପଦରେ ହେବେ ଅଭିଷିକ୍ତ
ରଖି ଉଚ୍ଚାଦର୍ଶ ମାନ ।
କେଉଁଠାରେ ତେବେ ଖୋଲିବେ ଆଶ୍ରମ
ସ୍ଥାନର ପ୍ରଭାବ ଯହିଁ
ଓଡ଼ିଆ ଜାତିର ଗୌରବ ଗାଥା
ଯେପରି ପାରିବ କହି ।
ଅନେକ ବିଚାର ପରେ
ସତ୍ୟବାଦୀର ବକୁଳ ବନକୁ
ସ୍ଥିର କଲେ ହୃଦୟରେ ।

ପରାକ୍ରମୀ ରାଜା ପୁରୁଷୋତ୍ତମ
କାଞ୍ଚି ଅଭିଯାନ ସ୍ମୃତି-
ସ୍ୱରୂପ ଏଠାରେ ଥାପିଥିଲେ ଆଣି
ସାକ୍ଷୀଗୋପାଳଙ୍କ ମୂର୍ତ୍ତି ।
ଓଡ଼ିଆ ଜାତିର ବୀରତା ପ୍ରତୀକ ଏ'ତ,
କାଳେ କାଳେ କୀର୍ତ୍ତି ହେବ ଏଥି ପ୍ରଚ୍ଚରିତ ।
ବନ ବିଦ୍ୟାଳୟ ଥାପିତ ହୋଇଲେ
ଜାଣିବେ ସେ ଛାତ୍ରଗଣ,
ଓଡ଼ିଆ ଜାତିର ଗୌରବ ଗାଥା
ଛୁଇଁବ ତରୁଣ ମନ,
ହୋଇବ ତା ସ୍ମୃତିମୟ,
ପ୍ରାଚୀନ ଭାରତ ଗୁରୁକୁଳାଶ୍ରମ
ଆଦର୍ଶର ହେବ ଜୟ ।
ଗୋପବନ୍ଧୁ, କୃପାସିନ୍ଧୁ, ହରିହର
ନୀଳକଣ୍ଠ, ଗୋଦାବରୀ
ପଞ୍ଚସଖା ଯାକ ପଣ୍ଡିତ ପ୍ରବର
ଏକରୁ ଆରେକ ବଳି ।
ରଚିଲେ ଆଶ୍ରମ ତହିଁ,
ବନ ବିଦ୍ୟାଳୟ ଗୁରୁକୁଳା ଶ୍ରମେ
ହସିଲା ସେ ବନଭୂଇଁ ।
ଅସହିଷ୍ଣୁ ଲୋକେ ସହିପାରି ନି
ଅନୁଷ୍ଠାନ ଅଭିବୃଦ୍ଧି
ଦେଶବିଦେଶରେ ଯଶ କୀର୍ତ୍ତି ତା'ର
ଆଣି ଦେଲା ଯେଉଁ ସିଦ୍ଧି ।

ପୋଡ଼ିଦେଲେ ବିଦ୍ୟାଳୟ
ଖୋଲା ଆକାଶର     ଗଛ ତଳେ ବସି
ପଢ଼ିଲେ ଛାତ୍ର ସକଳ ।
ବଉଳ ଫୁଲତ     ବୃଷ୍ଟି ହେଉଥାଏ
ପିଲାଙ୍କ ମୁଣ୍ଡରେ କେତେ,
ଆନନ୍ଦରେ ପିଲେ ପାଠ ପଢୁଥିଲେ
ନିର୍ମଳ ସୁଗନ୍ଧ ବାତେ ।
ସବୁଜ ଶ୍ୟାମଳ ଶିରୀ
ବେଢ଼ି ରହିଥିଲା     ଚଉପାଶେ ତାଙ୍କ
ଅନ୍ତର ଉଠେ ଭରି ।
ଜାତୀୟ ମାନ୍ୟତା     ପାଇ ବିଦ୍ୟାଳୟ
ଅଗ୍ରଗଣ୍ୟ ହେଲା ଦେଶେ,
ମୁକତି ସଂଗ୍ରାମ ଶଙ୍ଖ ବଜାଇଲା
ଜାଗ୍ରତ ଭାରତବର୍ଷେ ।
ଉଠିଲା ସ୍ୱାଧୀନ, ସ୍ୱର
ଏଇ ବିଦ୍ୟାଳୟୁ ଗଢ଼ା ହେଲେ କେତେ
ଦେଶପ୍ରେମୀ ଯୋଦ୍ଧୃବୀର ।
କର୍ପୂର ଯାଇଛି ଉଡ଼ି,
ସେ ବକୁଳବନ     କନା ପଡ଼ିଅଛି
ଅତୀତର ସ୍ମୃତି ବାଢ଼ି ।

ତା ୧୦.୭.୨୦୦୮
ଭୁବନେଶ୍ୱର

# ଫ୍ଲେମିଙ୍ଗ୍ ତାଙ୍କର ନାମ

ସ୍କଟ୍‌ଲାଣ୍ଡେ ଥିଲେ  କୃଷକ ଜଣକ
ଫ୍ଲେମିଙ୍ଗ୍ ତାଙ୍କର ନାମ
କୃଷି ଥିଲା ତାଙ୍କ ପ୍ରଧାନ ଜୀବିକା
ଖେତେ କରୁଥିଲେ କାମ ।
ବହୁ ଥିଲା ପାଖେ ନଈ
ହଠାତ୍ ଶୁଣିଲେ ଚିତ୍କାର କିଏ
ଛନ୍ଦୁଛି ସାହାଯ୍ୟ ପାଇଁ ।

ଦଉଡ଼ି ଯାଇଣ ଦେଖିଲେ ନଈରେ
ଘେରା ବାଲି ବୁକେ, ସିଏ,
ବୁଡ଼ିଯାଉଅଛି ତଳକୁ ତଳକୁ
ଛୋଟିଆ ବାଳକଟିଏ ।
ଆଖି ପିଛୁଳାକେ ତାଙ୍କୁ,
ଟାଣି ଆଣି ସିଏ ବଞ୍ଚାଇ ଦେଲେ
ଦାରୁଣ ମରଣ ବୁକୁ ।
ପିଠି ଥାପୁଡ଼େଇ କହିଲେ, "ବାବୁରେ !
କିଛି ହୋଇନାହିଁ ତୋର,
ଘରକୁ ଏଥର ପଳାଇ ଯାଆ ତୁ'
ଆସିବୁନି ନଈ କୂଳ
କେବେହେଲେ ଏକା ଏକା,
ଏ ନଈରେ ଅଛି ଘେରାବାଲି ଖଳା
ସବୁରି ମନରେ ଦକା ।
ସକାଳୁ ସକାଳୁ କିଏ ଜଣେ ଆସି
ଦୁଆରେ ପାରିଲେ ଡାକ,
ମିଷ୍ଟର ଫ୍ଲେମିଙ୍ଗ୍ ଅଛନ୍ତି କି ଘରେ
ଲୋଡ଼େ ମୁଁ ସାକ୍ଷାତ୍ ତାଙ୍କ
ମରଣ ମୁହଁରୁ ସିଏ,
ବଞ୍ଚାଇଛନ୍ତି ପୁଅକୁ ମୋର
ମହାନ୍ ସନ୍ଥଟିଏ ।

କୃଷକ, କୋଳରେ ପୁଅଟିକୁ ଧରି
ବାହାରି ଆସିଲେ ଘରୁ,
କହିଲେ ଭଦ୍ର ! କିଛି ମୁଁ ଅଧିକ
କରିନି ମଣିଷ ଠାରୁ ।
ରକ୍ଷା କରିଲେ ପ୍ରଭୁ,
ତାଙ୍କ କରୁଣା ବଞ୍ଚାଇ ଦେଲା
ଶ୍ରେୟଃ ତାଙ୍କର ସବୁ ।

ଫ୍ଲେମିଙ୍ଗ୍ କହିଲେ, "ପୁଅର ଦାୟିତ୍ୱ
ଦିଅନ୍ତୁ ମୋ ହାତେ ଟେକି
ପାଠ ପଢ଼ାଇ ମୁଁ ମଣିଷ କରିବି,
ରଣରୁ ଶୁଝିବି କିଛି ।"
ଆନନ୍ଦେ କୃଷକ ପୁଅକୁ ଛାଡ଼ିଲେ ସାଥେ
ତାଙ୍କ ଘରେ କିଆଁ ମଉଳିଯିବ ସେ
ଦାରିଦ୍ର୍ୟ କଷାଘାତେ ।

କୃଷକର ପୁଅ ତାଙ୍କ ପିଲା ସାଥେ
ଆନନ୍ଦେ ପଢ଼ିଲା ପାଠ,
ହେଲା ବୈଜ୍ଞାନିକ, ଜଗତକୁ ସିଏ
ଦେଖାଇଲା ନୂଆ ବାଟ ।
ଉଦ୍‌ଭାବନ କଲା ସିଏ,
'ପେନ୍‌ସିଲିନ୍' ଏକ ନୂତନ ଔଷଧ
ନ ଜାଣେ ତାଙ୍କୁ ବା କିଏ !
"ଆଲେକ୍‌ଜାଣ୍ଡର ଫ୍ଲେମିଙ୍ଗ୍" ତାଙ୍କର ନାମ
କେତେ ରୋଗୀଙ୍କୁ ସେ ଜୀବନ ଦେବାକୁ
ବରିନେଲେ ସେବା କାମ ।

ତା ୧୬/୭/୨୦୦୮,
ଭୁବନେଶ୍ୱର

# ବିଶ୍ୱବିଜୟୀ ବୀର

ମହାନ୍ ପ୍ରତାପୀ ବିଶ୍ୱବିଜୟୀ
ଆଲେକ୍‌ଜାଣ୍ଡର ଦିନେ
ବୁଲି ବୁଲି ଆସି ଉପଗତ ହେଲେ
ନଗର ପ୍ରମୋଦ ବନେ ।
ବିଜୟୀ ନରେଶ କ୍ଷମତା ପାଗଳ
ଅହଂକାର ଭରା ମନ
ମଦମତ୍ତ ସେ ପ୍ରଭୁତା ପଣରେ
ଉନ୍ମଦ ସ୍ୱାଭିମାନ ।
ଉଦ୍ୟାନ ପଥେ ଆସନ ପକାଇ
ବସିଥିଲେ ସାଧୁ ଏକ,
ଶୀତ ସକାଳରେ ଖରା ପୋଉଁଥିଲେ
ନଥିଲା ମନରେ ଦକ ।
ଆଲେକ୍‌ଜାଣ୍ଡର ଭାବିଲେ ସାଧୁଏ
ସମ୍ମାନେ ହେବେ ଠିଆ
ଦିଗ୍ ବିଜୟୀ ମୁଁ ସମ୍ରାଟ ବୀର
କିଏ ହେବ ଅମାନିଆ !
ଉଠିଲେନି ସାଧୁ ଆସନୁ ତାଙ୍କର
କହିଲେ ମୁହଁକୁ ଚାହିଁ
"ଘୁଞ୍ଚିଯାଅ ବାବୁ ! ଶୀତେ ଥରୁଚି ମୁଁ
ଦେହେ ଖରା ପଡୁନାହିଁ ।"
"କାହାକୁ କହୁଛ ଘୁଞ୍ଚିଯାଅ ବୋଲି
ଜାଣିଛକି ନାହିଁ ମୋତେ

ବିଶ୍ୱବିଜୟୀ ଚଳିବକି କେବେ
ତୁମରି ଆଦେଶ ମତେ ?"
"ଆଦେଶ ଦେଉନି, ଅନୁରୋଧ ବାବୁ
କରୁଛି ଘୁଞ୍ଚିବା ପାଇଁ
ମଣିଷ ହୃଦୟ ଜୟ କରି ହୁଅ
ବିଶ୍ୱ ହୃଦୟ ଜୟୀ ।
ସମ୍ମାନ କେବେ ମାଗେନାହିଁ ରାଜା
ସେ ସଦା ସମ୍ମାନୀୟ
ଯେ ହୃଦୟ ଜୟୀ ସେ ବିଶ୍ୱବିଜୟୀ
ପରମ ବନ୍ଦନୀୟ ।
ଏବେ ନୁହଁ ତୁମେ, ସେତେବେଳେ ହେବ
ବିଶ୍ୱ ବିଜୟୀ ବୀର
ଯେତେବେଳେ ମନୁ ତୁଟିଯିବ ତୁମ
ଏ ଘନ ଅନ୍ଧକାର ।"
ପ୍ରଣମି ସାଧୁଙ୍କ ପଦେ,
ଫେରିଗଲେ ବୀର ଆଲେକ୍ଜାଣ୍ଡର
ଆଲୋକ୍ ଦୀପ୍ତ ହୃଦେ ।

ତା୨ ୨/୦୭/୨୦୦୮
ଭୁବନେଶ୍ୱର
ବି:ଦ୍ର: ସାଧୁ ହେଉଛନ୍ତି ଗ୍ରିସର ପରମ ଜ୍ଞାନ ପିପାସୀ ଦରିଦ୍ର ସର୍ବହରା ବିଶ୍ୱବିଖ୍ୟାତ ଦାର୍ଶନିକ "ଡାୟୋଜିନିସ୍" ।

# ମହାପ୍ରତିଭା

ପୃଥିବୀ ବିଖ୍ୟାତ ବୈଜ୍ଞାନିକ ସେ
"ଆଇନଷ୍ଟାଇନ" ନ ଜାଣେ କିଏ
ତତ୍ତ୍ୱ ତାଙ୍କର "ଆପେକ୍ଷିକ"
ଚହଲ ତୋଳିଲେ ଜଗତେ ସିଏ ।
ବିଜ୍ଞାନର ଏ ତତ୍ତ୍ୱ ପାଇଁ, ସତ୍ୟ ପାଇଁ .....
ପାଇଲେ ନୋବେଲ ପୁରସ୍କାର,
ସଂସ୍କାର କଲେ କେତେ ଯେ ତତ୍ତ୍ୱ
ନଥିଲା ମନରେ ଅହଂକାର ।
ଏଡ଼େ ନାମୀଦାମୀ ମଣିଷ ସିଏ,
ଅତି ସେ ଉଦାର, ଅତି ସାଧା ସିଧା
ଅତି ଖୋଲା ମେଲା ମଣିଷଟିଏ ।

ଗବେଷଣାରତ ହୋଇଲେ କ୍ଳାନ୍ତ
ମଣ୍ଡପ ବୁକେ ଯାଆନ୍ତି ଚଳି -
ବେହେଲା ହାତରେ, ସୁର ତୋଳି ତାରେ
ତନ୍ମୟେ ସବୁ ଯାଆନ୍ତି ଭୁଲି ।
ବେହେଲା ବାଦିକା ରାଣୀ ଏହା ଶୁଣି
ଗଦ୍‌ଗଦ୍ ହେଲେ ଆନନ୍ଦେ ଅତି,
ଆମନ୍ତ୍ରଣ କଲେ ରାଜପୁରୀକୁ ସେ
ହୋଇବେ ସେ ତାଙ୍କର ରାଜଅତିଥି ।
ନିମନ୍ତ୍ରଣ ପାଇ ଆଇନ୍‌ଷ୍ଟାଇନ୍
ରେଳଯାତ୍ରା କଲେ ଆନନ୍ଦ ମନେ
ପ୍ରିୟ ବେହେଲାଟି କାନ୍ଧେ ଝୁଲାଇ
ଓହ୍ଲାଇଲେ ଯାଇ ଲକ୍ଷ୍ୟ ସ୍ଥାନେ ।

ମହାନ୍ ଅତିଥି ପାଛୋଟି ନେବାକୁ
ରାଜ ପ୍ରତିନିଧି ଥିଲେ ଯେ ଚାହିଁ
ଯାତ୍ରୀ ଗହଳେ ଭେଟିଲେ ବି ତାଙ୍କୁ
ଖୋଜି ବୁଲୁଥାନ୍ତି ଅତିଥି କାହିଁ ।
ଭାବିଲେ ନୁହନ୍ତି ଏ' କେବେ ସିଏ
ଏଡ଼େ ସାଦା ସିଧା, ମାମୁଲି ମଣିଷ
ରାଜାତିଥି କେବେ ନୁହନ୍ତି ଇଏ ।
ଖୋଜି ଖୋଜି ଶେଷେ ହତାଶ ହୋଇ,
ରାଜା ପ୍ରତିନିଧି ଫେରିଲେ ଉଆସେ, ପାଇଲେ ନାହିଁ ।

ରାଜା ବସିଥିଲେ ପ୍ରମୋଦ ଭବନେ
ରାଣୀ ବସିଥିଲେ ବେହେଲା ଧରି
ବେହେଲା ବାଦକ ବେହେଲାର ତାରେ
କି ମଧୁର ସ୍ୱର ଅଛନ୍ତି ତୋଳି !
ତନ୍ମୟ ରାଜା,ତନ୍ମୟ ରାଣୀ-
କୋଳେ ଧରି ତାଙ୍କ ବେହେଲା ହାତେ,
ରାଜା ଇଙ୍ଗିତେ ସ୍ୱର ମିଳାଇଲେ
ମୂର୍ଚ୍ଛିତ ମଧୁ ସେ ସ୍ୱର ସାଥେ ।
ରାଜପୁରୀ ହେଲା ସ୍ତବ୍ଧ ଚକିତ
ବିଶ୍ୱ ବନ୍ଦିତ ବେହେଲା ସ୍ୱରେ
ପ୍ରମୋଦ ବନର ଅଫୁଟା କଳିକା
କୋରକିତ ହେଲେ ବୃନ୍ତକୋଳେ ।
ସମ୍ମୋହନର କାଉଁରୀ କାଠି
ସମସ୍ତଙ୍କ ମନ ନେଇଛି ଲୁଟି ।
ରାଜପ୍ରତିନିଧି ମୁଣ୍ଡ ନଇଁଗଲା ଲଜ୍ଜା ଭରେ,
ମହାପ୍ରତିଭାକୁ ଖୋଜୁଥିଲେ ସିଏ ପୋଷାକ ତଳେ ।

୨୫/୦୭/୨୦୦୮
ଭୁବନେଶ୍ୱର

# ପ୍ରାଣୀଙ୍କ ମଙ୍ଗଳପାଇଁ

ଥିଲେ ଜଣେ ନାମୀ, ମହିପାଳ
ନାମଟି ତାଙ୍କର 'ଯଶ ପାଳ',
ଯଶ କୀର୍ତ୍ତି ବାନା ଉଡ଼େ ଫରଫର
ପ୍ରଜାଙ୍କର ଧର୍ମ ଅବତାର ।

ସଭିଙ୍କୁ ପାଳନ୍ତି ପୁଅ ପରି
ଉଦାରତା, ମନେ ଥିଲା ଭରି,
ତଥାପି ତାଙ୍କର କଠୋର ଶାସନେ
ରାଇଜେ ଶାନ୍ତି ଥିଲା ପୂରି ।

ଧରମ ବିଶ୍ୱାସୀ ମନ୍ତ୍ରୀବର
ଈଶ୍ୱରଙ୍କୁ ଧ୍ୟାୟୀ ବାରବାର -
କହନ୍ତି, "ପ୍ରାଣୀଙ୍କ ମଙ୍ଗଳ ପାଇଁ
ଯା' କରନ୍ତି ପ୍ରଭୁ ସବୁ ଭଲ ।"
ଅଶ୍ୱାଗାରେ ରାଜା, ସେନାପତି,
ଦେଖୁଥିଲେ ଅଶ୍ୱ ଧାର ପାତି,
ଧାରୁଆ ଅଶ୍ୱ ପରଖୁ ପରଖୁ
ରାଜାଙ୍କ ଆଙ୍ଗୁଳି ଗଲା କଟି ।
ଜ୍ୱାଳାରେ ବିକଳ ନରରାଣ
ବସିଥାନ୍ତି ମନ୍ତ୍ରୀ ଦୁଃଖ ମନ,
ଅଟେ ଏ ଦାରୁଣ ଅଭିଘାତ,
କହିଲେ, "ପ୍ରାଣୀଙ୍କ ମଙ୍ଗଳ ପାଇଁ
ଏହା ଯେ ଈଶ୍ୱର ଅଭିପ୍ରେତ ।"

ଗର୍ଜିଲେ ରାଜା କ୍ରୋଧ ଭରେ
ଆଦେଶିଲେ ନିଅ କାରାଗାରେ,
ମନ୍ତ୍ରୀ ପଦ ପାଇଁ ଅଯୋଗ୍ୟ ଇଏ
ରହିପାରିବେନି ଏ ପଦରେ ।

ଇମିତି ବିତିଲା କେତେ ଦିନ
ମୃଗୟାରେ ବଳିଅଛି ମନ,
ହରିଣ ପଛରେ ଦଉଡ଼ି ଦଉଡ଼ି
ପଶିଗଲେ ସିଏ ଘୋରବନ ।

ମୃଗୟାକ୍ଲାନ୍ତ ବସିଲେ ରାଜନ ଶ୍ରମଭାରେ...
ଗଛ ତଳେ
ବେଢିଗଲେ ଆସି ଡାକୁ ଦଳ,
'ଭଲ ବଳିଟାଏ ମିଳିଗଲା ଭାଇ
ବଳିପୀଠେ ବାନ୍ଧି ନେବା ଚଳ ।'
କହିଲେ ରାଜନ, "ମୂଢ଼ ମତି,
ଅଟେ ମୁଁ ଏ ରାଜ୍ୟ ନରପତି,
ଆସୁଛନ୍ତି ପଛେ ସୈନ୍ୟ ଦଳ ମୋ
ଯାଅ ଚାଲି ଥିଲେ ଭଲ ଗତି ।"

କିଏ ବା ଶୁଣୁଛି ତାଙ୍କ କଥା
ପରଖି ନେଲେ ସେ ଦେହ ଗୋଟା,
ନିଖୁଣ ନୁହନ୍ତି, ଛାଡ଼ି ଦେଲେ ତାଙ୍କୁ
ଆଙ୍ଗୁଳିଟାଏ ଅଟେ କଟା ।

ଯୋଗ୍ୟ ନୁହେଁ ଏ ବଳି ପାଇଁ,
ଚାଲିଗଲେ ତାକୁ ଧକ୍କା ଦେଇ ।
ଉଆସକୁ ଫେରିଗଲେ ରାଜା
ଉଠାଇ ଦେଲେ ସେ ତାଙ୍କ ସଜା,
ମୁକ୍ତ କରିଲେ ମନ୍ତ୍ରୀଙ୍କୁ ଦୀର୍ଘ କାରାବାସୁ
ତାଙ୍କ କଥା ହେଲା ଫଳପ୍ରସୂ ।

ସମ୍ମାନ ଭରେ ରାଜା ତାଙ୍କୁ
କହିଲେ, "ଭଦ୍ର ! ଭୁଲନ୍ତୁ ଦୁଃଖ ଅତୀତକୁ ।"
"ପ୍ରଭୁ ଯା' କରନ୍ତି ମଙ୍ଗଳ ପାଇଁ"
କହିଲେ ମନ୍ତ୍ରୀ ରାଜନଙ୍କୁ ।
ରାଜା ପଚାରିଲେ, "ମନ୍ତ୍ରୀବର !
କି ମଙ୍ଗଳ ହେଲା ଲାଭ କରି ଦଣ୍ଡ କାରାଗାର ?
କହିବେ କି ?
ଏ ରହସ୍ୟ ମୋତେ ବୁଝାଇ ଦିଅନ୍ତୁ
ହେ ବିବେକୀ !"
ମନ୍ତ୍ରୀ କହିଲେ, "ହେ ରାଜନ !
ମଣିମାଙ୍କ ସାଥେ ଯାଇଥିଲେ ମୁହିଁ ଘୋରବନ,
ତାକୁ ଦଳ ଆସି ନେଇଥାନ୍ତେ ମୋତେ ବଳି ପାଇଁ
କହିଥାନ୍ତେ ତା'ର ଖୁଣ ନାହିଁ ।
ବନ୍ଦି କଲେ ବୋଲି, ମରଣ ମୁହଁରୁ ଗଲି ତରି,
ମଣିମାଙ୍କ ହାତେ ମଙ୍ଗଳ ମୋର କଲେ ହରି ।"

ତା ୨୬/୭/୨୦୦୮
ଭୁବନେଶ୍ୱର

# ଅଷ୍ଟାବକ୍ର

ମୁନି ଋଷିଗଣ ତପସ୍ୟା ମଗନ
ଘୋର ଅରଣ୍ୟରେ ଆଶ୍ରମ ରଚି
ଦେବଳ ମହର୍ଷି ଗୁମ୍ଫା କୋଳେ ବସି
ତପୋ ମଗ୍ନ ସଦା ସେ ଦିବା ନିଶି ।

ଧ୍ୟାନ ପଥେ ଦିନେ ବାଧା ଉପୁଜିଲା
ଚଞ୍ଚଳ ହେଲା ନିବିଷ୍ଟ ଚିତ୍ତ
ମୁଦ୍ରିତ ନୟନ ବିସ୍ଫାରିତ ହେଲା
ଯେ ଦୃଶ୍ୟ ଦେଖନ୍ତି, ଏକି ଅଦ୍‌ଭୁତ !

ସ୍ୱର୍ଗର ସୁନ୍ଦରୀ ରମ୍ଭା ଅପସରୀ
ଉଭା ହୋଇଛନ୍ତି ନୟନ ଭାଗେ
"ମୋ ତପ ଭଗନ କଲ କିମ୍ପା ଦେବୀ !"
ପଚାରିଲେ ତାଙ୍କୁ ସେ କ୍ରୋଧାବେଗେ ।

ଲାସ୍ୟମୟୀ ରମ୍ଭା ନୟନ କଟାକ୍ଷେ
ନିରବିତ କଲେ ସେ କ୍ରୋଧ ବାଣୀ
ମୁଗ୍ଧ କଣ୍ଠେ ଅମୃତ ଢାଳି
କହିଲେ 'ମୁଁ ତବ ଅତିଥି ମୁନି !
ଆସିଛି ଶ୍ରୀରୂପ ଦର୍ଶନ ପାଇଁ
ସ୍ପର୍ଶ ସୁଖ ଦେଇ ପବିତ୍ର କରାନ୍ତୁ
ଏ ରୂପ ଅମୃତ ଅଧର ପିଇ ।'

ମୁନି ଶାନ୍ତ ସ୍ୱରେ କହିଲେ, "ସୁନ୍ଦରି !
ତପଃ ଭଗ୍ନ କରି କି ଲାଭ ତବ
ଦେବ ଭୋଗ୍ୟା ତୁମେ ଯାଅ ଦେବ ପୁରେ
ଲାଭ କର ତୁମେ ସ୍ୱର୍ଗ ବିଭବ ।
ହେ ସୁରସୁନ୍ଦରୀ, ତପୋଭଙ୍ଗ କରି
ମୁନିଙ୍କୁ କରିଲେ ବିପଥଗାମୀ
କି ଯଶ ଲଭିବ ଦେବ ଭୋଗ୍ୟା ତୁମେ
ଯାଅ ଯାଅ ଫେରି ହେ ମାୟାବିନୀ ।
ପାରିବନି ତୁମ ମନକୁ ତୋଷି,
ଜିତେନ୍ଦ୍ରିୟ ଏହି 'ଦେବଳ' ଋଷି ।

ରମ୍ଭା ରୁଷ୍ଟ ହୋଇ ଦେଲେ ଅଭିଶାପ
"ଅଷ୍ଟବକ୍ର ହୋଇଯାଅ ପଲକେ
'ଅଷ୍ଟାବକ୍ର' ନାମେ ହୁଅ ପରିଚିତ
କାଳେ କାଳେ ତୁମେ ଏ ମର୍ତ୍ତ୍ୟଲୋକେ ।
ତପଃ ଗର୍ବ ତୁମ ଯାଉ ହେ ତୁଟି,
ଅରୂପ, ଏ ରୂପ ନେଉ ହେ ଲୁଟି ।"

ଆଖି ପିଛୁଳାକେ ଦେବଳ ମହର୍ଷି
'ଅଷ୍ଟାବକ୍ର' ରୂପ କଲେ ଧାରଣ,
ଟାଳି ପାରିଲାନି ମନକୁ ତାଙ୍କର
କାମାକୁଳା ନାରୀ ଅନଙ୍ଗ ବାଣ ।
ସେ କାମ ଜୟୀ,
ବ୍ରହ୍ମଜ୍ଞାନୀ ଅଙ୍ଗ ବିଭଙ୍ଗ ହେଲେ ବି
ହେଲେ ବିଜୟୀ ।

ରାଜର୍ଷି ଜନକ ରାଜସଭା ଆଜି
ଭରିଛି ବେଦଜ୍ଞ ବ୍ରାହ୍ମଣ ଗଣେ,
ମୁନି ଋଷି ସାଧୁ ସମାବେଶ ତହିଁ
ସର୍ବେ ସୁବିଦିତ ବ୍ରହ୍ମଜ୍ଞାନେ ।
ଚାଲିଛି ତର୍କ,
ବ୍ରହ୍ମ ଉପଲବ୍ଧି ଜ୍ଞାନ ବିତର୍କ ।
'ବନ୍ଦୀ' ନାମେ ଜଣେ ତାର୍କିକଙ୍କ ସାଥେ
ତର୍କ କରି ଯେ ହାରିବ ଯଦି
ଏହାଥିଲା ପଣ, ଯେତେ ବିଜ୍ଞ ଜନ
ହେଲେ ବି ସେ ନିଶ୍ଚେ ହୋଇବେ ବନ୍ଦୀ ।
ଜନନୀଙ୍କ ଠାରୁ ଜାଣିଲେ ଦେବଳ,
'ମହର୍ଷି ଅସୀତ ବନ୍ଦୀ, ପିତା'
ତର୍କେ ହାରିଯାଇ ଏ ଦଶା ଭୋଗନ୍ତି
ସିଏ ଥିଲେ ଦିନେ ଜଗତ ଜିତା ।
ଚଳିଲେ ଦେବଳ ରାଜସଭା ପଥେ,
ଅଟକାଇ ଦେଲେ ପ୍ରହରୀ ଦଳ
ଅଷ୍ଟବକ୍ରଟାଏ ଆସିଛି ସଭାକୁ
ବ୍ରହ୍ମଜ୍ଞାନୀ ସାଥେ କଷିବ ବଳ !
ଜନକ ଜାଣିଲେ, ସେ ପାଛୋଟି ନେଲେ
ବ୍ରହ୍ମଜ୍ଞାନୀ ମୁନି ଏ ଅଷ୍ଟାବକ୍ର
ତାର୍କିକଙ୍କ ସାଥେ ଯୋଗଦେଲେ ତର୍କେ
'ବନ୍ଦୀ'ଙ୍କର ମୁଖ କରିଲେ ବକ୍ର ।
ତାର୍କିକ ପଣ୍ଡିତ 'ବନ୍ଦୀ' ଗଲେ ହାରି
ଜ୍ଞାନଗର୍ବ ତାଙ୍କ ହୋଇଲା ହତ-

ଦମ୍ଭ, ଅହଂକାର, ଗର୍ବ, ଅଭିମାନ,
ନିମିଷକେ ହେଲେ ସେ ପାଳଭୂତ ।
ମୁକ୍ତ ହେଲେ ପିତା, ଫେରିଲେ ଉଭୟେ
ପହଞ୍ଚି 'ସମଙ୍ଗ' ନଦୀର ତୀରେ
କହିଲେ ପୁତ୍ରକୁ ସ୍ନାନ କର ଏଥି
ଅଙ୍ଗ ଦୋଷ ଦୂର ହେବ ସତ୍ୱରେ ।
ପିତାଙ୍କ ଆଦେଶେ ଅଷ୍ଟାବକ୍ର ତହିଁ କରିଲେ ସ୍ନାନ,
ବକ୍ର ଦୋଷ ତାଙ୍କ ଦୂର ହୋଇଗଲା,
ଅଚିରେ ହୋଇଲେ ସେ ରୂପବାନ ।
ନାମ ରହିଗଲା, ସେ ଅଷ୍ଟାବକ୍ର-
ମହର୍ଷି ନାମରେ ରହିଲା ଟେକ ।

ତା୨୮/୭/୨୦୦୮
ଭୁବନେଶ୍ୱର

# ପୁଣ୍ଡରିକ

ସେ ଋଷିବାଳକ, ନାମ ପୁଣ୍ଡରିକ
ବନବାସେ ଆଶ୍ରମରେ
ମାତା ପିତା ସାଥେ ଥିଲେ ସେ ଆନନ୍ଦେ
ଶ୍ରଦ୍ଧାପୂର୍ଣ୍ଣ ହୃଦୟରେ ।
ଜରା ଜର୍ଜରିତ ଜନକ ଜନନୀ
ନଥିଲା ଚଳନ ଶକ୍ତି
ମାତୃପିତୃ ସେବା ଥିଲା ତାଙ୍କ ଧ୍ୟାନ
ମନରେ ଅଚଳା ଭକ୍ତି ।
ସ୍ନାନ ଶୌଚ ଆଦି ନିତ୍ୟ କର୍ମ ତାଙ୍କ
ତୁଲାନ୍ତି ଶରଧା ଭରେ
କୁନି ପିଲା ପରି ବସାଇ କୋଳରେ
ଖୁଆନ୍ତି ନିଜ ହାତରେ ।
କଥାରେ ଭୁଲାଇ ଦେଖାଇ ହରିଣ
ଆଶ୍ରମ ବତକ କୁଆ
କଙ୍କି ବଣି ଜହ୍ନମାମୁଙ୍କୁ ଦେଖାଇ
ଖୁଆନ୍ତି ଯେପରି ମାଆ ।
ଖୁଆଇ ଶୁଆଇ ଶେଷେ,
ଲାଗନ୍ତି କାମରେ ପୂଜା ବିଧାନରେ
ମନଥାଏ ତାଙ୍କ ପାଶେ ।
ଅସୁସ୍ଥ ଜନକ ଜନନୀଙ୍କୁ ଦିନେ
ପୁଣ୍ଡରିକ ଧରି କୋଳେ
ସେବା କରୁଥିଲେ, ଦେହକୁ ଆଉଁଶି
ଜଘନରେ ଥାପି ଶିରେ ।
ଡାକିଲେ ବାହାରେ ଜଣେ,
"ଅପେକ୍ଷା କରନ୍ତୁ ! ନପାରୁଛି ଯାଇ
ଅତିବ୍ୟସ୍ତ ଅଛି ଏଣେ ।"
"ସ୍ୱୟଂ ଭଗବାନ ଡାକୁଅଛି ମୁହିଁ ଆସିଛି ଦୁଆରେ ତୁମ"
"କୋଳେ ମୁଁ ଧରିଛି ମୋ ପିତାମାତାଙ୍କୁ
ଡେରିହେବ କିଛି କ୍ଷଣ-

ଯିବି ପ୍ରଭୁ କାମ ସାରି,
ଅଧମ ସନ୍ତାନ ଦୋଷ ନଧରିବେ
କରୁଛି ପଦେ ଗୁହାରି ।
ମାତା ପିତା ସେବା ସାରି ପୁଣ୍ଡରିକ
ଯୋଡ଼ ହସ୍ତେ ହେଲେ ଉଭା
କହିଲେ, "ସାର୍ଥକ ହେଲାଏ ଜୀବନ
ଦରଶନେ ଦିବ୍ୟ ଶୋଭା,
ହେ ପ୍ରଭୁ ! କି ମନ ଲୋଭା ।
ମୁନି ଯୋଗୀ ଜନ ଯାହାର ଦର୍ଶନ
ନ ପାଆନ୍ତି ତପୋ ଧ୍ୟାନୁ
ତାଙ୍କୁ ସ୍ୱଚକ୍ଷୁରେ ଦରଶନ କରି
ତରିଗଲି, ଭବ ଧାମୁ ।
ଭକତ ବତ୍ସଳ ସାଇଁ
କି କରୁଣା ଦୀନ ପାଇଁ !"
ହସି ହସି ପ୍ରଭୁ କହିଲେ, "ହେ ବତ୍ସ,
ଆହେ ଭକ୍ତ ପୁଣ୍ଡରିକ !
ଟଳମଳ କଲା ଆସନକୁ ମୋର
ମାତୃପିତୃ ଭକ୍ତି ତାକ ।
ସନ୍ତୁଷ୍ଟ ହୋଇଛି ମୁହିଁ,
କି ବର ମାଗୁଛ ମାଗ ମନ ଖୋଲି,
ଦେବାକୁ ଆସିଛି ଧାଇଁ ।"
"ଅତିକ୍ରମି ଅଛି ସମସ୍ତ ବରକୁ, ପ୍ରଭୁ ତବ ଦରଶନ,
ଲୋଡ଼ାନାହିଁ ମୋର, ଆଉ ଅନ୍ୟବର
ମାଗୁଛି ତବ କଲ୍ୟାଣ
ମାତା ପିତାଙ୍କର ସେବାରେ ପାଏ ମୁଁ ଶାନ୍ତି
ପରମ ଆନନ୍ଦେ ଏ ଜୀବନ ଯାଉ ବିତି ।"
'ତଥାସ୍ତୁ କହିଲେ ପ୍ରଭୁ',
ସହଜେ ମିଳେନା ଯେ ଦୁର୍ଲଭ ଧନ
ତାଙ୍କୁ ମିଳିଗଲା ସବୁ ।।

୭/୮/୨୦୦୮, ଲକ୍ଷ୍ନୌ

# ବୁଝିଲା ଅବୁଝାମନ

ବିମଳା ନଗର ରାଇଜରେ ଥରେ
ଥିଲେ ଜଣେ ନାମୀ ରାଜା
ନାମଟି ତାଙ୍କର ଥିଲା 'ଚନ୍ଦ୍ରକାନ୍ତ'
ପାଳୁଥିଲେ ସୁଖେ ପ୍ରଜା ।

ବାହାରିଲେ ଦିନେ ଘନ ଘୋର ବନେ
ମୃଗୟା ବିନୋଦ ପାଇଁ
ଶଇନ ସାମନ୍ତ ଧରି ଥାଟବାଟ
ଆନନ୍ଦେ ଚଳିଲେ ସାଇଁ ।

ବନେ ବୁଲୁ ବୁଲୁ ଦେଖିଲେ ପୂଜନ-
ରତ, ଅପସରା ଗଣ
ମାଆ ପାର୍ବତୀଙ୍କୁ ପୂଜା କରୁଛନ୍ତି
ଢାଳି ଦେଇ ମନ ଧ୍ୟାନ ।

ରାଜାଙ୍କୁ ସମ୍ଭାଷି, ବାନ୍ଧିଲେ ଅପ୍‌ସରା
ମଙ୍ଗଳ ସୂତ୍ରକୁ ହାତେ
କଣ୍ଠ ହାର ଖୋଲି ଅରପିଲେ ରାଜା
ବହୁ ଉପହାର ସାଥେ ।
ମୃଗୟା ନକରି ଫେରିଲେ ରାଜନ
ଦେବୀଙ୍କ ଆଶିଷ ଲଭି,
ରାଣୀ 'ବିଶାଳାକ୍ଷୀ' ଉପଗତ ହେଲେ
ଅନ୍ତର ଆହ୍ଲାଦେ ଦ୍ରବି ।
ପାଛୋଟି ଆଣିଲେ ପୁରେ,
ବିପୁଳ ଉଲ୍ଲାସ ଭରେ ।

ରାଜାଙ୍କର କରେ ଦେଖି ସେ ସୂତ୍ରକୁ
ବିସ୍ମିତେ ଚାହିଁଲେ ରାଣୀ
ମୃଗୟା ବିହାରେ ବାନ୍ଧିଛି ଶ୍ରଦ୍ଧାରେ
କେଉଁ ବନ ବିନୋଦିନୀ ।

କହିଲେ ରାଜନ, "ଏ ମଙ୍ଗଳ ସୂତ୍ର
ବାନ୍ଧିଛନ୍ତି ପରିଗଣ
ବନଦେବୀଙ୍କର ଶୁଭସୂତ୍ର ଏତ
କରି ଅଛି ପରିଧାନ ।
ଅନ୍ୟଥା ନଭାବ ସଖି !
ଏ ମଙ୍ଗଳସୂତ୍ର ଅଟେ ଆଗୋ ଦିବ୍ୟ ରାକ୍ଷି ।
ବୁଝିଲେନି ରାଣୀ, କହିଲେ କ୍ରୋଧରେ,
ମୋହିନୀ ରମଣୀ ମୋହେ
ପଡ଼ିଛନ୍ତି ରାଜା ପ୍ରୀତି ବନ୍ଧନରେ
ଏ'ତ ଶୁଭସୂତ୍ର ନୁହେଁ ।
ଟାଣି ଫିଙ୍ଗିଦେଲେ ଦୂରେ-
ଶୁଖିଲା ବୃକ୍ଷଟି ପଲ୍ଲବିତ ହେଲା
ଶୁଭସୂତ୍ର ପରଶରେ ।
ଦଉଡ଼ି ଆସିଲେ ରାଣୀ 'ମହାଦେବୀ'
ସୂତ୍ରଟିକୁ କରେ ଧରି
ରାଜାଙ୍କର କର କଟଟିରେ ତାହା
ବାନ୍ଧିଲେ ଯତନ କରି
ପ୍ରଥମା ରାଣୀଙ୍କୁ ଚାହିଁ,
କହିଲେ ରାଜନ ନିର୍ବାସନେ ଯାଅ
ଅବିବେକି କାମ ପାଇଁ ।

ବନେ ଚାଲିଗଲେ ରାଣୀ ବିଶାଳାକ୍ଷୀ
ରାଜାଙ୍କ ଆଦେଶ ଲଭି
ପାଟରାଣୀ ପଦେ ଅଭିଷିକ୍ତା ହେଲେ
ସାନରାଣୀ 'ମହାଦେବୀ' ।
ସେ'ତ ପ୍ରିୟ ପ୍ରିୟତମା,
ଶୋଭାମୟୀ ଅନୁପମା ।
ବିଶାଳାକ୍ଷୀ ବନେ ବୁଲୁ ବୁଲୁ ଦିନେ
ଭେଟିଲେ ମନ୍ଦିର ଏକ
ହୋଇଛନ୍ତି ତହିଁ 'ସୁବର୍ଣ୍ଣ ଗଉରୀ'
ସିଂହାସନେ ଅଭିଷେକ
ଆନନ୍ଦେ ଗଦ୍ ଗଦ୍ ହୋଇ,
କହିଲେ ମାଆଗୋ ! ଅଭୟ ଦିଅଗୋ !
ପୁଣ୍ୟ ପଦେ ଥାନ ଦେଇ ।
ବନସ୍ତ ମଧରେ ମନ୍ଦିର ବେଢ଼ାରେ
ଦିନଦିନ ଗଲା ବିତି
ପାର୍ବତୀ ଦେବୀ କହିଲେ ସପନେ
'ଅଚଳା ଅଟେ ତୋ' ଭକ୍ତି ।
ଆଜିଠାରୁ ହେଲା ଦୂର-
ତୋର ଅପରାଧ, ବିଷାଦ ବିପଦ,
ଫେରିଯିବୁ ରାଜପୁର ।
ପରଦିନ ରାଜା 'ଚନ୍ଦ୍ରକାନ୍ତ' ଆସି
ଉପଗତ ହେଲେ ତହିଁ
ଅଶ୍ରୁ ଛଳ ଛଳ ନୟନରେ ରାଣୀ
ପ୍ରଣମିଲେ ପଦେ ଯାଇ ।
ନମିତ ନୟନେ ଉଭା,
ହାତ ଧରି ରାଜା ରଥେ ବସାଇଲେ
ସେ ଦୃଶ୍ୟ କି ମନଲୋଭା ।

# ଗିର୍ଜାଘର ଓ ରକେଟ୍

ଆମ ଭାରତର କେରଳ ରାଇଜ୍ୟେ
'ଥୁମ୍ବା' ବୋଲି ଅଛି ଗୋଟିଏ ଥାନ,
ଆମରି ଦେଶର ପ୍ରଥମ ରକେଟ୍
ସେଇଠାରୁ ହେଲା ଉତ୍‌କ୍ଷେପଣ ।
ସେ ମହାମାଟିର ଆଶିଷ ନେଇ,
ଆକାଶଯାନଟି ଉଠିଲା ଶୂନ୍ୟେ
ସଫଳତା ଲାଭ କରିବା ପାଇଁ ।
ଯେଉଁଠୁ ଉଠିଲା ରକେଟ୍ ଆମର
ସେଇଠାରେ ଥିଲା ଗିର୍ଜା ଏକ,
ବିଜ୍ଞାନୀ 'ବିକ୍ରମ ସରାଭାଇ' ଥିଲେ
ମହାନ୍ ଆମର ବୈଜ୍ଞାନିକ ।
ଖୋଜି ବୁଲୁଥିଲେ ସାଥୀଗଣ ନେଇ
ରକେଟ ପ୍ରେରଣା ଠିକଣା ଥାନ,
ଏଇ ଗିର୍ଜାର ପରିସର ଥିଲା-
ଅତି ଅନୁକୂଳ ସର୍ବୋତ୍ତମ ।

"ମମେନ୍ ମାର୍ଗା ଉଲେନ୍" ଥିଲା ନାଁଟି ତାର
ମହାନ୍ ପାଦ୍ରି 'ପେରେରା' ଅଟନ୍ତି-
ପରିଚାଳକ ତା' ଧର୍ମପାଳ ।
ସରାଭାଇ ଯାଇ ଭେଟିଲେ ଦିନେ,
ଆଶା ବିଶ୍ୱାସ ବହି ସେ ମନେ ।

କହିଲେ, "ମହାନ୍ ! ଆସି ଅଛି ତବ ଭିକ୍ଷା ପାଇଁ,
ମହାନୁଭବତା ମିଳିଲେ ଟିକିଏ-
ଧନ୍ୟ ହେବ ଏ ଭାରତ ଭୂଇଁ ।

ଗିର୍ଜାର ଏଇ ପୁଣ୍ୟ ଭୂମିକୁ କରନ୍ତୁ ଦାନ
ବିଜ୍ଞାନର ମୁଁ ଗବେଷଣା ପାଇଁ ବାଛିଚି ଥାନ ।
ପୁଣ୍ୟଭୂମିର ଧରମ ବଳେ,
ଭାରତର ନୂଆ ରକେଟ ଉଠିବ-
ମହାଆକାଶର ଶୂନ୍ୟ ପୁରେ ।
ଅତି ଶୁଭମୟ ପୁଣ୍ୟ ଭୂମି,
ବିଜ୍ଞାନ ଆଉ ଧର୍ମର ମହାମିଳନ ହୋଇବ
ଆକାଶ ଚୁମି ।"

ଭାବ ଗଦ୍‌ଗଦ୍ କରୁଣା ଆର୍ଦ୍ର
କଥା ପଦକର ପରଶ ପାଇ,
କହିଲେ ବିଜ୍ଞାନ ଯାତ୍ରା ତୋଳିବ
ଏଥିପାଇଁ କରିପାରିବି ନାହିଁ,
ଆସନ୍ତୁ ସାଥେ,
ଧର୍ମସଭାର ଅନୁମତି ନେବା,
ଚଳିଲେ ଆନନ୍ଦେ ଗିର୍ଜା ପଥେ ।

ପ୍ରାର୍ଥନା ପୀଠେ ସମବେତ ଥିଲେ ଭକତଗଣ
ପାଦ୍ରି- କହିଲେ, "ସନ୍ତାନଗଣ ଶୁଣ ହେ ଶୁଣ ।
ଭାଗ୍ୟ ଆମର, ସାଥେ ମୋ ଅଛନ୍ତି
ପୃଥିବୀ ବିଖ୍ୟାତ ବୈଜ୍ଞାନିକ,
ମହାକାଶର ସେ ଗବେଷଣା ପାଇଁ-
ସବୁ କାମ ଛାଡ଼ି ଆସିଛନ୍ତି ଧାଇଁ,
ଆମ ଦାନ ଦେଇ, ଭାରତ ମାତାର ରଖିବା ଟେକ ।
ରଖିବା ଟେକ ।

ରକେଟ୍ ଗବେଷଣା ସେ କରିବେ
ବିଜ୍ଞାନ ଜୟଯାତ୍ରା ପାଇଁ
ପ୍ରଭୁଙ୍କ ନିବାସ ଆମ ଏ ଗିର୍ଜା
ପାଦ୍ରି ନିବାସ ସ୍ଥଳକୁ ନେଇ ।
ଏଠାରୁ ହୋଇବ ମହାଭାରତର
ପ୍ରଥମ ରକେଟ୍ ଉତ୍କ୍ଷେପଣ,
ଅର୍ପଣ ଆମେ କରିପାରିବାକି
ପ୍ରଭୁଙ୍କର ଏଇ ପୁଣ୍ୟଧାମ ?
ପୁଣ୍ୟ କାମରେ ଲାଗିବ ଏହା,
ମନ ଖୋଲା ମତ ପ୍ରକାଶ କରନ୍ତୁ
ସ୍ୱାଧୀନ ଭାବରେ ଭାବି, ଯେ' ଯାହା ।"

ସମବେତ ସ୍ୱରେ ସମସ୍ତେ କହିଲେ,
"ଲାଗୁ ସେବା କାମେ ଏ' ପୁଣ୍ୟ ଭୂମି
ବିଜ୍ଞାନ ସେବା, ବିଶ୍ୱର ସେବା
ସମର୍ପି ଦେଉଛୁ ହୃଦୟ ମଣି ।"

ପ୍ରତିଷ୍ଠା ହୋଇଲା ଗବେଷଣାଗାର
ଗିର୍ଜାର ବୁକେ ମଧ୍ୟସ୍ଥଳେ,
ବିଜ୍ଞାନୀ ଗଣ, ବାସ ବିରଚିଲେ
ପାଦ୍ରିଙ୍କ ଗୃହ ପ୍ରାଙ୍ଗଣରେ
ଆମ ଭାରତର ପ୍ରଥମ ରକେଟ୍ ପ୍ରେରଣ ଶାଳା
'ମମେନ୍ ମାର୍ଗା ଉଲେନ୍' ପୁଣ୍ୟ ଗିର୍ଜା ଥିଲା ।

ମାନବାଧିକାର ଦିବସ (ତା୧୦।୧୨।୨୦୦୨) ଭାଷଣ ପ୍ରସଙ୍ଗରେ ଭାରତର ପ୍ରାକ୍ତନ ରାଷ୍ଟ୍ରପତି ଡକ୍ଟର ଅବଦୁଲ କଲାମଙ୍କ ତଥ୍ୟକୁ ନେଇ ଏ ଆଲେଖ୍ୟ । (ସମାଜ ୫.୧୧.୨୦୦୮)

# ଯଶୋଧାରା

ସ୍ୱର୍ଣ୍ଣ ପଲଙ୍କରେ ଶାୟିତା ରୂପସୀ
ରାଜବଧୂ ଯଶୋଧାରା
ଶିଶୁପୁତ୍ର କୋଳେ ନିଦ୍ରିତ, ମୁଦ୍ରିତ
ସତେ ବା' ପଦ୍ମ ପାଖୁଡ଼ା ।

ଉଠିଲେ ସିଦ୍ଧାର୍ଥ ଶଯ୍ୟାତ୍ୟାଗ କରି
ପରିହରି ରାଜବେଶ
ମୁକୁଟ ଉତାରି, ରତ୍ନମାଳା ଖୋଲି
ରଖିଲେ ପଲଙ୍କ ପାଶ ।
ପତ୍ରଟିଏ ଦେଲେ ଥୋଇ,
ଯାଉଛି "ଶ୍ରେୟସୀ ତପୋପଥେ ବନେ
ଚିର ଶାନ୍ତି ଲାଭ ପାଇଁ ।"

ପ୍ରତ୍ୟୁଷ ପ୍ରହରେ ହେଲା ମୁଖରିତ
ରାଜପୁରୀ ମଧୁତାନେ
ଓଁକାର ଝଙ୍କାର, ପ୍ରଭାତ ବନ୍ଦନା
ମଙ୍ଗଳ ମଧୁର ଗାନେ ।
ଥପ୍ କରି ଗଲା ଥମି,
ବଧୂ ମହଲରେ ଉଚ୍ଛୁଳି ଉଠିଲା
କରୁଣ କ୍ରନ୍ଦନ ଧ୍ୱନି ।
ତଡ଼ିତ୍ ବେଗରେ ପ୍ରଚାରିତ ହେଲା
ଯୁବରାଜ ଶାକ୍ୟସିଂହ
ସନ୍ନ୍ୟାସୀ ବେଶରେ ଚାଲି ଯାଇଛନ୍ତି
ଏଡି ସାଂସାରିକ ମୋହ ।

ହାହାକାର ଗଲା ଖେଳି,
କିଏ ଭାବିଥିଲା ତାଙ୍କ ପରି ବୀର
ରାଜ ସୁଖ ଦେବେ ଦଳି !

ଉପଗତ ହେଲେ ସେ ଶାକ୍ୟ ସନ୍ନ୍ୟାସୀ
ରୋହିଣୀ ନଦୀର ତୀରେ
ସ୍ନାନ ତରପଣ ସମାପନ କରି
ଚଳିଲେ ସେ ବନ ପୁରେ ।

ବୁଲି ବୁଲି ଶେଷେ ବୋଧି ଦ୍ରୁମ ତଳେ
ବସିଲେ ଗଭୀର ତପେ
କୃଚ୍ଛ ସାଧନାରେ ମଗ୍ନ ହେଲେ ମୁନି
ମହାନିର୍ବାଣର ପଥେ ।
ହୋଇଲେ ପ୍ରବୁଦ୍ଧ ବୁଦ୍ଧ,
ମହା ଆଲୋକର ମହାଜ୍ୟୋତି ଧାରା
ମହାକାରୁଣିକ ସେ'ତ ।

ସନ୍ନ୍ୟାସିନୀ ସମ କାଟନ୍ତି ଜୀବନ
ରାଜବଧୂ ଯଶୋଧାରା
ତ୍ୟାଗଦୀପ୍ତ ହେଲା ଅନ୍ତର ତାଙ୍କର
ତ୍ୟାଗ କରି ଭୋଗ ଭାରା ।
ସତେ ଅବା ବନାଶ୍ରମେ,
ବନ ଜୀବନ ସେ' ଭୋଗ କରୁଛନ୍ତି
ସ୍ୱାମୀବ୍ରତ ପାଳି ଧ୍ୟାନେ ।

ପ୍ରବଜ୍ୟା ପଥରେ ବୁଲୁଥାନ୍ତି ବୁଦ୍ଧ,
ପିତୃ ନିମନ୍ତ୍ରଣ ପାଇ-
ଆସିଲେ ନଅରେ, ଜନନୀଙ୍କ ପାଶେ
ଚଳିଲେ ସେ ଭିକ୍ଷା ପାଇଁ ।

ନୂତନ ଧର୍ମରେ କରିଲେ ଦୀକ୍ଷିତ
ଧର୍ମସଭା ମଧ୍ୟେ ମୁନି
ବଧୂ ଧର୍ମ ପାଳି, ଆସିଲେନି ତହିଁ
ରାଜବଧୂ ସନ୍ନ୍ୟାସିନୀ ।

ପ୍ରଶାନ୍ତ ଗମ୍ଭୀର ଜ୍ୟୋତିର୍ମୟ ବୁଦ୍ଧ
ପ୍ରବେଶିଲେ ତାଙ୍କ ପୁରେ,
ଯଶୋଧାରା ଆସି ପ୍ରଣମିଲେ ପଦେ
ଅଶ୍ରୁ ସିକ୍ତ ନୟନରେ ।
ପୋଛି ଦେଲେ ପଦ ପଣତ କାନିରେ
ଘେନ ପ୍ରଭୁ ଅଶ୍ରୁଭିକ୍ଷା
ତୁମ ଧର୍ମେ ମୋତେ ଦୀକ୍ଷିତ କରହେ !
ଦେଇ ତବ ମହାଦୀକ୍ଷା ।

ଆଶୀର୍ବାଦ ଛଳେ ମଧୁର କଣ୍ଠରେ
କହିଲେ, ଗୋ ଯଶୋଧାରା !
ସିଦ୍ଧାର୍ଥର ସିଦ୍ଧି ଅନ୍ତରାଳେ ଅଛ
ଆତ୍ମ ଶକ୍ତି ଢାଳି ପରା

ନିର୍ବାଣାନନ୍ଦର ଅଧିକାରିଣୀ ଗୋ !
ଭରିଛି ଜୀବନ ପାତ୍ର
କି ଦୀକ୍ଷା ଦେବି ମୁଁ ଅଟେ ଯେ, ଦୀକ୍ଷିତ
ଘେନ ଆଶୀର୍ବାଦ ମାତ୍ର ।
ଆନନ୍ଦ, ରାହୁଲ, ଦୀକ୍ଷିତ ହୋଇଲେ
ତ୍ୟାଗ କଲେ ରାଜପୁରୀ
ଓଗାଳିଲେ ପଥ ରାଜା ଶୁଦ୍ଧୋଦନ
ନଛାଡ଼ିବେ ତାଙ୍କୁ ବୋଲି ।
କମ୍ପିତ କଣ୍ଠରେ କହିଲେ, "ହେ ବୁଦ୍ଧ,
ଇଏ କି ଅହିଂସା ଧର୍ମ !
ପିତା ମାତାଙ୍କର କୋଳ ଶୂନ୍ୟ କରି
ଆଚରୁଛ ଏ କି କର୍ମ ?
ତାଙ୍କ ଅନୁମତି ବିନା,
ବାଳକ ଜନଙ୍କୁ ନକର ଦୀକ୍ଷିତ
ପିତୃବାଣୀ ହେଉ ଘେନା ।"
କରୁଛି ଗ୍ରହଣ ପିତାଙ୍କ ଆଦେଶ ।
ତାହା ହେଉ ଧର୍ମନୀତି
ଧର୍ମ ସଂଘେ ତାହା ହୋଇଲା ଗୃହୀତ
ପାଳୁଛନ୍ତି ବୌଦ୍ଧ ଯତି ।

ତା ୩୮।୨୦୦୮
ଲକ୍ଷ୍ନୌ

"ଅନ୍ତର୍ଦୀପ ଭବୋ"
ନିଜ ଭିତରୁ ନିଜ ପାଇଁ ଆଲୋକର ସନ୍ଧାନ କର ।

- ସିଦ୍ଧାର୍ଥବୁଦ୍ଧ

# ମହର୍ଷି ନାରାୟଣ

ଦୂର ଅତୀତରେ ଥିଲେ ଜଣେ ସାଧୁ
ନାମ ତାଙ୍କ 'ପବହାରୀ',
କିଏ ବା' ନ ଜାଣେ ନାମଟି ତାଙ୍କର
ସେ ମହାନ୍ ବ୍ରହ୍ମଚାରୀ ।

ତାଙ୍କ ପାଶେ ଅଛି ଅମୂଲ୍ୟ ସଂପଦ
ସମସ୍ତେ ଜାଣନ୍ତି ଏହା
କି' ସମ୍ପଦ ଅଛି ସାଧୁ ପର୍ଣ୍ଣପୁରେ
କେହି ନଜାଣନ୍ତି ତାହା ।

ଥରେ ଜଣେ ଚୋର, ହେଲା ଲୋଭାତୁର
ପଶିଲା ଆଶ୍ରମେ ଯାଇ
ଯାହା ସେ ପାଇଲା,ନେଇ ପଳାଇଲା
ବାବା ପଡ଼ିଥିଲେ ଶୋଇ ।

ନିଦ ଭାଜିଗଲା, ସେ ଉଠି ବସିଲେ
ଚୋର ପଳାଇଲା ଡ଼ରେ
ଯାହା ନେଇଥିଲା ଫୋପାଡ଼ି ଦେଲା ସେ
ଦଉଡ଼ିଲା ଖରତରେ ।

ପଛେ ପଛେ ତା'ର ଦଉଡ଼ିଲେ ବାବା
ଡାକି ଡ଼ାକି ନାରାୟଣ,
ଚମକି ଚାହିଁଲା, ଏକି କଥା ହେଲା
ଚୋରର ପୁଣି ଏ ନାମ ।
ଠିଆ ହୋଇଗଲା କ୍ଷଣି

ଧରି ନେଲେ ବାବା ଆଶ୍ରମେ ତାଙ୍କର
ତା ହାତକୁ ଟାଣି ଟାଣି ।
ଛାତି ତା'ର ଦୁକୁ ଦୁକୁ,
ମାଡ଼ ଭୟେ ତାର ଥରୁଥିଲା ଦେହ
ପାଟି ତା'ର ପାକୁ ପାକୁ ।

କ୍ଷମା ଦିଅ ବୋଲି କହିଲା କଷ୍ଟରେ
ଖନି ବାଢ଼ିଗଲା ପାଟି
ପବହାରୀ ବାବା କଅଁଳେ କହିଲେ,
ଥାପୁଡ଼େଇ ତା'ର ପିଠି
"ଏ ସବୁ ଜିନିଷ ତୋର-
ମୋ ପାଖରେ ଥିଲା, ଫେରାଇ ନେ' ତୁ
ଭାବି ନାହିଁ ତୋତେ ଚୋର ।"

ସିଏ ସବୁତକ ଗୋଟେଇ ପୋଟେଇ
ବାନ୍ଧିଲା ଗଣ୍ଠିଲି ଏକ
ହୁଏ କନକନ ମନ ଛନ ଛନ
ହେଉଥାଏ ଦକ ଦକ ।

ଚାଲିଗଲା ଚୋର ଗଣ୍ଠିଲିଟି ନେଇ
ବନ ପଥେ ଏକା ଏକା
ନଦୀକୂଳ ବରଗଛ ମୂଳେ ବସି
ମେଣ୍ଟାଇଲା ସିଏ ଥକା ।
ଭୋକରେ ଜଳୁଛି ପେଟ
ଗଣ୍ଠିଲି ଭିତରୁ ଫଳତକ ଖୋଲି
ଖାଇଲା ହୋଇ ଉଚାଟ ।
ପେଟେ ପାଣିପିଇ ହୋଇ ଧୁଆ ଧୋଇ
ବସିଲା ସେ ଗଛ ମୂଳେ
ଲୁତୁ ପୁତୁ ଲାଗେ ପୁଟୁଳିଟି କିଆଁ
ଖୋଲିଲା ସେ କୁତୂହଳେ ।

ଦେଖିଲା ମୁଣାରେ ଥୁଆ ହୋଇଅଛି
ବାବାଙ୍କ ବିଭୂତି କିଛି ।
ତା' ଭିତରେ ଅଛି ମୁଦ୍ରିକା ଏକ
ରତ୍ନ ପରି ଝଟକୁଛି ।
ଖୁସି ହୋଇ ଦେହେ ବୋଳିଲା ବିଭୂତି
ପିନ୍ଧିଲା ମୁଦ୍ରିକା ଗୋଟି,
ଆଖି ପିଛୁଳାକେ ବଦଳିଲା ମନ
ମାୟା ମୋହ ଗଲାତୁଟି ।
ବିଷୟ ବାସନା ସମ୍ଭୋଗ କାମନା
ସବୁ ହୋଇଗଲା ଦୂର
ତ୍ୟାଗର ତଟିନୀ କଲା କୁଳୁ କୁଳୁ
ପରାଣେ ପ୍ରୀତିର ଝର ।
ଅନୁଭବ କଲା ହୃଦୟ ଭିତରେ
ଆଲୋକ ଉଠିଛି ଭରି
ସନ୍ନ୍ୟାସୀ ବେଶରେ ବାହାରିଲା ଚୋର
ସଂସାରକୁ ତୁଚ୍ଛ କରି,
ହିମାଳୟେ ଯାଇ ସାଧୁ ସନ୍ଥ ମେଳେ
ତପସ୍ୟାରେ ହେଲା ଲୀନ
ସିଦ୍ଧିଲାଭ କଲେ ଦୀର୍ଘ ତପୋବଳେ
ଋଷି ଶ୍ରେଷ୍ଠ 'ନାରାୟଣ' ।
ହିମାଳୟ ପଥେ ଦିନେ,
ସ୍ୱାମିଜୀ ବିବେକାନନ୍ଦ ଭେଟିଥିଲେ
ଜ୍ୟୋତିର୍ମୟ ଅନୁପମେ ।
ମହାଋଷି ନାରାୟଣଙ୍କ ଦର୍ଶନେ
ପୁଲକିତ ହେଲା ମନ,
ଶ୍ରଦ୍ଧା ଭକ୍ତି ସିଏ ଅରପିଲେ ପଦେ
ସେ' ଅଟନ୍ତି ମହାମାନ୍ୟ ।

ତା ୧୪.୦୯.୨୦୦୮
ଲକ୍ଷ୍ନୌ

# ଗୁରୁ ନାନକ

ମୁସଲମାନ ସେ ଶିଷ୍ୟ ଗହଣରେ
'ଗୁରୁ ନାନକ'
ଯାତ୍ରା ପଥେ ଦିନେ ଅଟକିଲେ ଯାଇ
ଗାଁରେ ଏକ,
କ୍ଳାନ୍ତ ସେମାନେ ଭୋକିଲା ଭାରି
ଖାଇବାକୁ କିଛି ଦେଲେ ନାହିଁ ଲୋକେ
ପିଇବାକୁ ଅବା ଟୋପାଏ ବାରି ।

ଗାଁ ଛାଡ଼ି ଦୁହେଁ ଆସିଲାବେଳେ
ଆଶୀର୍ବାଦ ସେ ଦେଲେ ଗାଁ ଲୋକେ
ଆନନ୍ଦ ଭରେ,
"ଯିବନି କୁଆଡ଼େ ବାହାରକୁ ବାବୁ !
ଏ' ଗାଁ ଛାଡ଼ି
ସୁଖରେ ଦୁଃଖରେ ରହିଥାଅ ଏଥି
ମାଟିକାମୁଡ଼ି,
ଏ' ଗାଁ ଶିରୀ
ତୁମ ପ୍ରାଣେ ଦେଉ ଆନନ୍ଦ ଭରି ।"

ଗୁରୁଶିଷ୍ୟ ଦୁହେଁ ଆଉ ଏକ ଗ୍ରାମେ
ହୋଇଲେ ଉଭା,
ଗାଁ ଲୋକ ତାଙ୍କୁ ଭକତିରେ କେତେ
କରିଲେ ସେବା ।

ଅତିଥିସତ୍କାରେ ପ୍ରୀତ ହେଲେ ଗୁରୁ
ସେ କାରୁଣିକ
ଆଶୀର୍ବାଦ କେତେ ଢାଳି ଦେଲେ ତାଙ୍କୁ
ଗୁରୁ ନାନକ ।
କହିଲେ, "ବାବୁ !
ଶୁଣହେ ସବୁ,
ଯୁବକ ସମାଜ ଗ୍ରାମୁ ଯାଅ ଚାଲି
ମଙ୍ଗଳ କରିବେ ତୁମର ପ୍ରଭୁ ।
ଦିଗେ ଦିଗେ ଯାଅ, ବିଦେଶ ଭୂଇଁ
ଏ ଗାଁର ମୋହ ତୁଟାଇ ଦେଇ ।"

ଫେରିବା ପଥରେ ପଚାରିଲେ ଶିଷ୍ୟ
"ହେ ଗୁରୁଦେବ !
ବୁଝି ପାରିଲିନି ଆଶୀର୍ବାଦ ଏକି ?
ରହସ୍ୟ ତବ,
କହନ୍ତୁ ପ୍ରଭୁ !
ଦୂର ହେଉ ମନୁ ସଂଶୟ ସବୁ ।"

ହସି ହସି ଗୁରୁ କହିଲେ, "ବାବୁରେ !
କହିଛି ଏ ବିଶ୍ୱ ମଙ୍ଗଳ ପାଇଁ
ଆଗ ଗାଁ ଲୋକେ ବିଦେଶକୁ ଗଲେ
ଅମଣିଷ ପଣ ବୁଣିବେ ତହିଁ ।
ସେଥିପାଇଁ ତାଙ୍କୁ କଲି ବାରଣ,
କହିଲି, ଗାଁରେ, କୂଅ ବେଙ୍ଗପରି ରହିବେ ପୁଣ ।
ଏ' ଗାଁର ଲୋକେ ବଡ଼ ଉଦାର
ନାହିଁ ଭେଦଭାବ ନାହିଁ ବିକାର,
ଧରମକୁ ନେଇ ନୁହଁନ୍ତି ଅନ୍ଧ
ସେବା ପରାୟଣ, ସ୍ନେହେ ଆବଦ୍ଧ ।

ଗାଁ ଛାଡ଼ିଗଲେ ଦେଶ ବିଦେଶକୁ
ଚହଟିବ ତାଙ୍କ ମହକ ଗୁଣ
ମାନବ ଜାତିର ମଙ୍ଗଳ ହେବ
ଉଦିତ ହୋଇବ ଭାଗ୍ୟ ପୁଣ ।”
ବୁଝିପାରି ଭ୍ରମ ଶିଷ୍ୟଟି କହିଲା,
“ହେ ଗୁରୁଦେବ !
ଶକ୍ତି ମୋର କାଇଁ କଳିବାକୁ
ଦିବ୍ୟ ହୃଦୟତବ ।”
ନାନକ କହିଲେ “ଶୁଣ ବତ୍ସ ମୋର
ଏ ନୀତି ବାଣୀ,
ଅଶାନ୍ତ ହୃଦୟ ଉଦାର କରହେ !
ନୀତିକୁ ମାନି ।
ସମୂହ ପ୍ରାର୍ଥନା, ସମୂହ କୀର୍ତ୍ତନ
ମନରେ ବଢାଏ ସମୂହଭାବ,
ଏକାକୀ ଭାବକୁ ମନୁ ଦୂର କରିଦିଏ
ଜାଗେ ଜାଗରଣ କି ଅଭିନବ ।
ସଂଗତ ପଙ୍ଗତେ ବଳାଅ ମନ,
ଧର୍ମ ଆଚରଣେ ନିର୍ବିକାର ଚିତ୍ତ
େ  ଇବ ପୁଣ ।”

ତା୨୧/୦୯/୨୦୦୮
ବାର୍ଡ଼, ଲକ୍ଷ୍ନୌ

# ମୀରା ଓ ମୂର୍ତ୍ତି ମୋହ

ଜାପାନର ଝିଅମାନେ ଭାଙ୍ଗନ୍ତିନି
କଣ୍ଢେଇ ତାଙ୍କର,
ସେ ଭାବନ୍ତି-
"ପ୍ରାଣମୟ ଶ୍ରଦ୍ଧାପାଇ, ହେବ ତହିଁ-
ଜୀବନ ସଂଚାର ।
ସେ ହୋଇବ ଜୀବନର ସାଥୀ,
ପ୍ରାଣମୟୀ ମୂର୍ତ୍ତି ତା'ର-
ପ୍ରାଣର ଅତିଥି ।"

"ମୂର୍ତ୍ତି ତତ୍ତ୍ୱ ଥିଲା କାଳାନ୍ତରେ
ଅନନ୍ତ କାଳରୁ ଏହା
ପ୍ରମାଣିତ ଭାରତ ଭୂଇଁରେ ।"

ଚିତୋରର ରାଜବଧୂ ମହିୟସୀ ମୀରା
କଣ୍ଢେଇ କୃଷ୍ଣଙ୍କୁ ନେଇ
ଅର୍ପିଥିଲେ ଭକ୍ତିର ପସରା ।
ଭକ୍ତିର ଶୃଙ୍ଗାର ତୋଳି ପ୍ରାଣ ପ୍ରାର୍ଥନାରେ
ପ୍ରୀତିର ପ୍ରସୂନ ମାଳା ଅରପି ଗଳାରେ
ନାଚୁଥିଲେ ଭକ୍ତି ଗୀତ ଗାଇ,
ନଚାଉଥିଲେ ସେ ବାଳ ଗୋପାଳ କହ୍ନାଇ ।
ଭାବ ଭୋଳେ ହେଉଥିଲେ ଏକ,
ମୂର୍ତ୍ତିଟିକୁ ହୃଦୟରେ କରି ଅଭିଷେକ ।

ସନ୍ନ୍ୟାସିନୀ ରାଜବଧୂ ମୂର୍ତ୍ତିର ପ୍ରେମିକା
ସାଜିଥିଲେ କୃଷ୍ଣଙ୍କର ରାଧା ପ୍ରାଣାଧିକା ।
କୃଷ୍ଣ ପାଗଳିନୀ ଅଟେ ମୀରାର ଅନ୍ତର
ଲୋକ ଅପବାଦ ତାଙ୍କ ଥିଲା ଦୁର୍ନିବାର ।

ରାଜବଧୂ ହୋଇ,
ପାଗଳିନୀ କିନ୍ତୁ ସିଏ, କୃଷ୍ଣ ପ୍ରେମପାଇଁ ।

ସିଂହାସନେ ବଂଶୀଧାରୀ,
ଦୂରୁ ଶୁଭେ ବଇଁଶୀର ସ୍ୱର
କିଏ କରେ ମୀରା ପ୍ରାଣ
ସୁରେ ସୁରେ ବ୍ୟାକୁଳ ଅସ୍ଥିର !
ସିଏ କି ମୁରାରି ? ?
ଭିତରେ ବାହାରେ ତାଙ୍କୁ ରହିଛନ୍ତି ଘେରି ।
ମୂର୍ତ୍ତି ମୁଖ ଚାହିଁ -
ପଚାରନ୍ତି, "ପ୍ରାଣ ସଖା' !
ଦେଖା ଟିକେ ସତେ ଦେବ ନାହିଁ ?"

ଦ୍ୱାରକାନାଥଙ୍କୁ ମୀରା କରନ୍ତି ଦର୍ଶନ
ଭକ୍ତି ପାଗଳିନୀ ମୀରା ହୋଇ ହର୍ଷ ମନ ।
ଦିନେ ସିଂହାସନ ପାଶେ ଆତ୍ମହରା ହୋଇ
ବୀଣା ଛନ୍ଦେ ଭଜନରେ ନିଜକୁ ହଜାଇ-
ତଦ୍‌ଗତ ତଦ୍‌ଲୀନ,
ନିର୍ନିମେଷ ଅଟେ ମୁଗ୍ଧା ମୀରାଙ୍କ ନୟନ ।

ମହାପୀଠେ ମହାସନ ହେଲା ଟଳମଳ
ମୂର୍ତ୍ତି ନେଲେ ମହାରୂପ, ଭକ୍ତିରେ ବିହ୍ୱଳ-
ମୀରାଙ୍କର ତେଜୋରୂପ ହେଲା ତହିଁ ଲୀନ
ଏକାକାର ହୋଇଗଲେ ଭକ୍ତ ଭଗବାନ ।
ମୂର୍ତ୍ତି ହେଲେ ମୂର୍ତ୍ତିରେ ପ୍ରକଟ
ମୀରା କିନ୍ତୁ ହୋଇଗଲେ ତହିଁ ଅପ୍ରକଟ ।

ତା ୨୪/୦୭/୨୦୦୮, ଲକ୍ଷ୍ନୌ

# ଭ୍ରାତୃମିଳନ

ପଶାରେ ପରାସ୍ତ ପାଣ୍ଡବ ଗଣ
ସତ୍ୟ ରକ୍ଷା ପାଇଁ ଗଲେ ସେ ଚଳି
ହସ୍ତିନାକୁ ଛାଡ଼ି ଘନବନ ପଥେ,
ସାରା ରାଇଜରେ ଚହଳ ତୋଳି ।

ତୀର୍ଥାଟନ ବେଳେ ବୁଲି ବୁଲି ସେତ
ବଦରିକା ବନେ ମିଳିଲେ ଯାଇ
ରହିଲେ ସେଠାରେ ମହାଆନନ୍ଦରେ
କିଛି ଦିନ ପାଇଁ ସେ ପାଞ୍ଚଭାଇ ।

ଅଦୂରେ ବହୁଛି ଶୁଦ୍ଧ ସ୍ୱଚ୍ଛ ତୋୟା
ସରଗ ସରିତା ପାବନୀ ଗଙ୍ଗା
ମୈନାକ ପର୍ବତ ହିରଣ୍ୟ ଶଇଳ
ଶୋଭାରେ ଶୋଭିତ ବିଚିତ୍ର ରଙ୍ଗା ।

ବନାଶ୍ରମେ ଦିନେ ପାଣ୍ଡବ ବଧୂ
ବସିଥିଲେ ଏକା ଭୀମଙ୍କ ପାଶେ
ଶୀତଳ ପବନ ବହି ଆସୁଥିଲା
ମହକିତ କରୁଥିଲା ସୁବାସେ ।

ସହସ୍ରଦଳ ପଦ୍ମ ଗୋଟିଏ
ଭାସି ଆସି କାହୁଁ ପଡ଼ିଲା ପଦେ
ଚମକି ଚାହିଁଲେ ଦ୍ରୌପଦୀ ରାଣୀ
ତୋଳିନେଲେ ତାକୁ ପରମାନନ୍ଦେ ।
ଏକି ଅଦ୍‌ଭୁତ ସୁଗନ୍ଧ ଭରା ପଦ୍ମ ଏକ,
ନାମଟି ତାହାର ନିଶ୍ଚୟ ଅଟେ "ସୌଗନ୍ଧିକ" ।

ଭୀମଙ୍କୁ କହିଲେ, ଆଣହେ ବହନ
ମୋ ପାଇଁ ଏପରି ପୁଷ୍ପଟିଏ,
ଅନୁରୋଧ ତାଙ୍କ ଏଡ଼ି ନ ପାରିଲେ
ଧନୁର୍ବାଣ ଧରି ଚଳିଲେ ସିଏ ।

ବୁଲୁବୁଲୁ ବନେ ପଥରେ ଦେଖିଲେ
ଓଗାଳିଛି ବାଟ ବାନର ଏକ,
ଲମ୍ବାଇ ଲାଙ୍ଗୁଡ଼ ଶୋଇ ଯାଇଅଛି
ଗର୍ଜିଲେ ଭୀମ କର୍ମେ ମୂଳକ ।
ନ ଶୁଣିଲା ପରି ନ ଖୋଲି ଆଖି,
ଯେତେ ଗରଜିଲେ ସେ ଡରିବକି !

ଚିହ୍ନିଛୁ କି ନାହିଁ ତୁ ବାନର ଛାର
ଦେଖିଛୁ କି ନାହିଁ ଗଦାକୁ ମୋର
ଏକା ପାହାରକେ ଶେଷ କରିଦେବି
ଖର୍ବ କରିବି ଗର୍ବ ତୋର ।
ମହାବୀର ଅଟେ ମୁଁ ଭୀମସେନ
ପଡୁନି କି କାନେ ମୋର ଗର୍ଜନ ?

"ଆଖିମିଟି ମିଟି କରି ସେ ମାଙ୍କଡ଼
ଚାହିଁଲା ଭୀମଙ୍କୁ କହିଲା, ତାଙ୍କୁ
"ପାରିବତ ଯାଅ ଡେଇଁକରି ବାବୁ !
ଉଠାଅନା ବୁଢା ମାଙ୍କଡ଼ ଟାକୁ ।"
"ଅଗ୍ରଜ ମୋହର ହନୁମାନ ବୀର
ସମୁଦ୍ରକୁ ଡେଇଁଥିଲେ ସେ ପଥେ
ବାୟୁଦେବ ପୁତ୍ର ମୁଁ ତାଙ୍କ ଅନୁଜ
ପାରିବିନି କ'ଣ ମୁଁ ଡେଇଁ ତୋତେ ?
ପାରିବି ଡ଼େଇଁ ମୁଁ ପାରିବି ଡେଇଁ,

ଡେଙ୍ଗିବିନି ତୋତେ ଭାଇ ଖାତିରିରେ
ତାଙ୍କ ବଂଶଧର ଅଟୁରେ ତୁହି ।"

"ହସି ଦେଇ ବୁଢ଼ା ମାଙ୍କଡ଼ କହିଲା,
ଚାଲିଯା ଲାଙ୍ଗୁଡ଼ ଆଡ଼େଇ ଦେଇ
ପରିଚୟ ତୁମ ଆନନ୍ଦ ଦେଇଛି
ଯେତେହେଲେ ତୁମେ ଅଟ ମୋ ଭାଇ ।"

ଝାଳ ନାଳ ହୋଇ ଲାଙ୍ଗୁଡ଼ ଟେକିଲେ
ପାରିଲେନି ଭୀମ ଉଠାଇ ତଲୁ
ସାମାନ୍ୟ ମାଙ୍କଡ଼ ନୁହଁ କପିବର,
ପରିଚୟ ମୋତେ ଏଥର ମିଳୁ ।

"ମୋର ପରିଚୟ ଦେଇଛତ ତୁମେ,
ତୁମର ଅଗ୍ରଜ ମୁଁ ହନୁମାନ,
ତୁମକୁ ଭେଟିବି ବୋଲି ଅପେକ୍ଷାରେ
ବସିଅଛି ଏଥି ମୁଁ ଦିନ ଦିନ ।
ଶକ୍ତିମାନ୍ ହୋଇ ବହି ଭକ୍ତି ଭାବ
ଶ୍ରଦ୍ଧା ଓ ସମ୍ମାନ ଭରିଛ ହୃଦେ
ଏ ମମତା ମୋତେ ମୁଗ୍ଧ କରିଛି
ଆନନ୍ଦ ଦେଇଛି ହୃଦୟ ଗତେ !"

ପ୍ରଣମିଲେ ଭୀମ ହନୁମାନ ପଦେ
କହିଲେ, ବୁଝିଲି ମହିମା ତବ,
କି ସୌଭାଗ୍ୟ ବଳେ ପାଇଲି ଦର୍ଶନ
ଏହା ଅଟେ ମୋର ପରମ ଭାଗ୍ୟ ।

ହନୁମାନ ତାଙ୍କୁ ଆଲିଙ୍ଗନ କରି
ଆଶୀର୍ବାଦ ଛଳେ କହିଲେ,ବୀର !
'ମହାଭାରତର ମହାଯୁଦ୍ଧ ଦିନେ-
ସଂଘଟିତ ହେବ' ଏ ବାକ୍ୟ ମୋର
ଅନ୍ୟଥା ନହେବ ରଖ ହେ ମନେ,
ଅର୍ଜୁନଙ୍କ ରଥ ପତାକାରେ ମୁହିଁ -
ଅଦୃଶ୍ୟେ ରହିବି ସେ ମହା ରଣେ ।
ପ୍ରଭୁ ଶ୍ରୀରାମଙ୍କ ଭକ୍ତ, ଜାଣ
ବିପଦ ତାରଣ ମୁଁ ହନୁମାନ ।

ତା'ପରେ ସେ ନେଲେ ବିଦାୟ ଭାଇଠୁ
ଚାଲିଗଲେ ଭୀମ ଆନନ୍ଦମନେ
ଖୋଜି ବୁଲିଲେ ସେ ପଦ୍ମ ପୋଖରୀ
କେଉଁଠାରେ ଅଛି ଏ ଘୋର ବନେ ।
ମଧୁର ମହକ ଛୁଟେ ବନପୁରେ
ଅଦୂରେ ଦିଶିଲା ପୁଷ୍କରିଣୀ
ସ୍ୱର୍ଣ୍ଣ ପଦ୍ମେ ଭରିଅଛି ତାହା
ଶୋଭାମୟୀ, ମନ ନୟନ ଜିଣି ।
ବେଢି ରହିଛନ୍ତି ଯକ୍ଷ ପ୍ରହରୀ
ଗଦା ମାଡ଼େ ଭୀମ କରିଲେ ହତ
ଶତଦଳ ପଦ୍ମ ତୋଳିଲେ ଗୋଟିଏ
ମୁଗ୍ଧ ଆବେଗେ ସେ ପୁଲକିତ ।
ଦ୍ରୌପଦୀଙ୍କ କରେ ଉପହାର ଦେଲେ ଆନନ୍ଦମନେ,
ପଦ୍ମଟିପାଇ ବିହ୍ୱଳ ହେଲେ ସେ ଉଲ୍ଲସନେ ।

ତା ୧୪/୧୦/୨୦୦୦
ଭୁବନେଶ୍ୱର

# ଗୁରୁଙ୍କ ମହାପ୍ରୟାଣ

ସମସ୍ତେ କହନ୍ତି ମୋର ମୋର ବୋଲି
ନୁହନ୍ତି କାହାର ଜଣେ,
ଊର୍ଦ୍ଧ୍ୱାକାଶରେ ଥାଆନ୍ତି 'ଚନ୍ଦ୍ରିକା'
ଚନ୍ଦ୍ରିକା ବିତରଣେ
ସବୁରି ଜହ୍ନମାମୁ,
ଊର୍ଦ୍ଧ୍ୱେ ଯେ ଥାଏ ନୁହେଁ ଜଣକର
ସର୍ବପ୍ରିୟ ସେ ଯେଣୁ ।

ସାଧୁ ସନ୍ଥ ଗୁରୁ ସନ୍ନ୍ୟାସୀ ମୁନି
ଊର୍ଦ୍ଧ୍ୱେ କରନ୍ତି ବାସ
ସେ'ତ ଊର୍ଦ୍ଧ୍ୱରେତାଃ, ଊର୍ଦ୍ଧ୍ୱ ପ୍ରଚେତାଃ,
ନୁହନ୍ତି ନୀଚତା ଦାସ,
ଉଦାର ହୃଦୟ ନେଇ
ଉଚ୍ଚ ନୀଚ ଭାବ, ଧର୍ମ ବିଭେଦ
ମନରେ ନଥାନ୍ତି ବହି ।

ଶ୍ରୀଗୁରୁ ନାନକ ସେଇପରି ଜଣେ
ଅଟନ୍ତି ମହାନ୍ ସନ୍ଥ
ହିନ୍ଦୁ, ମୁସଲମାନ, ଶିଖ୍, ଖ୍ରୀଷ୍ଟାନ
ଅଟନ୍ତି ତାଙ୍କର ଭକ୍ତ,
ସମ ଦୃଷ୍ଟି ସେ ବହି ।
ନଥିଲା ତାଙ୍କର ଉଦାର ହୃଦୟେ
ବଡ଼ ସାନ ବୋଲି କେହି ।

ପହଞ୍ଚିଲା ତାଙ୍କ ଅନ୍ତିମ ବେଳ
ବିଳପିଲେ ଶିଷ୍ୟଗଣ,
ଯେ ଯାହା ରୀତିରେ କରିବେ ସଂସ୍କାର
ହିନ୍ଦୁ ମୁସଲମାନ ।
ଚାଲିଲା ବିବାଦ ଘୋର,
କ୍ଷୀଣ ସ୍ୱର ତୋଳି କହିଲେ ଗୁରୁଜୀ
ଶୁଣ ଶେଷକଥା ମୋର ।

"ପୁଷ୍ପ ସ୍ତବକ ଉଭୟେ ଥୋଇବ
ଶବାଧାର ଦୁଇ ଧାରେ,
ଯେଉଁ ଫୁଲଥିବ ସଜ ଓ ସତେଜ
ପରଦିନ ସକାଳରେ,
ସେହି ସମ୍ପ୍ରଦାୟ ରୀତି -
ନୀତି ଅନୁସାରେ କର ସଂସ୍କାର,
ଅନ୍ୟ ନହେବ ଏଥି ।"

ଏତିକି କହି ସେ ଆଖି ବୁଜି ଦେଲେ
ନିର୍ବାଣ ପଥେ ଚଳି
ଆଶ୍ରମେ ସବୁ ହେଲେ ବ୍ୟଥା ହତ
ହାହାକାର ଗଲା ଖେଳି ।
ଶବାଧାର ପାଶେ ଯାଇ,
ସଜ୍ଜିତ କଲେ ପୁଷ୍ପ ସ୍ତବକେ
ଦୁଇ ଧାରେ ଫୁଲ ଥୋଇ ।
ଜଡ଼ ଶରୀରକୁ ଆବୃତ୍ତ କଲେ
ନବୀନ ବସ୍ତ୍ର ଆଣି
ପ୍ରତ୍ୟୁଷ ହେଲେ ସଂସ୍କାର ପାଇଁ
ଚଳିବେ ସର୍ବେ ମାନି ।

ଅରୁଣ କଷାୟ ଶୁଦ୍ଧ ଶ୍ରୀମୟ
ପୂର୍ବାଶା ହେଲା ଯେବେ
ସମବେତ ହେଲେ ଶିଷ୍ୟ ସକଳ
ଶବ ଯାତ୍ରାରେ ଏବେ ।

ଦେଖିଲେ ଶ୍ରୀଗୁରୁ ଶରୀର ହୋଇଛି
ଉଭାନ ସେ ଶବାଧାରୁ,
ମଉଳିନି ଫୁଲ ହଜିନି ସୁବାସ
ବେନି ଧାର ସ୍ତବକରୁ ।

ଦିବ୍ୟପ୍ରେମର ନିଦର୍ଶନ ଏ'
ଭେଦାଭେଦ ନାହିଁ କିଛି
ସରବେ ସମାନ,ହିନ୍ଦୁ ମୁସଲମାନ
ଫୁଲତକ ନେଲେ ବାଛି ।

ସତ୍କାର କଲେ ହିନ୍ଦୁ ଶିଷ୍ୟଗଣ
ତାଙ୍କ ଫୁଲତକ ନେଇ
କବର ରଚିଲେ ମୁସଲମାନ ଶିଷ୍ୟ
ନିଜ ଫୁଲତକ ଥୋଇ ।
ସ୍ୱପଥକୁ ଅନୁସରି,
ସ୍ମୃତି ଅବଶେଷ କଲେ ବିସର୍ଜନ
ଅବସୋସ ମନେ ଭରି ।
ଗୋଟିଏ ଜାଗାରେ ତହିଁ
ପାଖାପାଖି ଦୁଇ ସମାଧି ମନ୍ଦିର
କାଳ କାଳ ଅଛି ରହି ॥

ତା ୨୪/୦୯/୨୦୦୮
ଭୁବନେଶ୍ୱର

# ତ୍ରିଶଙ୍କୁ

କଥାରେ କଥାରେ କହନ୍ତି ସମସ୍ତେ
ତ୍ରିଶଙ୍କୁ ଅବସ୍ଥା ହେଲା
ଏ ପାଖ ହେଲାନି ସେ ପାଖ ହେଲାନି
କି ଦଶା ପଡ଼ିଲା ଭଲା ।
ଝୁଲୁଛି ମଝିରେ ରହି,
କା' ଆଗେ କହିବି ଭାଗ୍ୟଦୋଷ ଏ'ତ
ନିରବେ ଯାଉଛି ସହି ।

ପୁରାଣ କାଳରେ ତ୍ରିଶଙ୍କୁ ନାମରେ
ଥିଲେ ଜଣେ ନାମୀ ରାଜା
ଅଜବ ଖିଆଲ ଜୁଟିଲା ମନକୁ
କୂଳ ଗୁରୁ ହେଲେ ଖୋଜା ।
ବ୍ରହ୍ମର୍ଷି ବଶିଷ୍ଠ ଆସି,
ପହଞ୍ଚିଲା କ୍ଷଣି ପ୍ରଣମି ରାଜନ
କହିଲେ ସେ ହସି ହସି ।

"ତପୋବଳେ ମୋତେ, ହେ ଆର୍ଯ୍ୟପ୍ରବର !
ସଶରୀରେ ସ୍ୱର୍ଗ ପୁରେ-
ପଠାଇ ଦିଅନ୍ତୁ, ଏ ମହିମଣ୍ଡଳୁ
ରହୁ କୀରତି ଭୂତଳେ ।
ଯୁଗେ ଯୁଗେ ତୁମ ନାମ,
ପ୍ରଚାରିତ ହେବ, ସାରା ଜଗତରେ
ଅନବଦ୍ୟ ଅନୁପମ ।"

କହିଲେ ଆଚାର୍ଯ୍ୟ, "ଅତି ଅସମ୍ଭବ
କଥା ଏହା ନୃପବର !
କେହି ଯାଇନାହିଁ, ନପାରିବେ ଯାଇ
ବଞ୍ଚିଥାଇ, ସ୍ୱର୍ଗପୁର ।"
ମର୍ତ୍ତ୍ୟ ମରଣଶୀଳ
ଅନୁରୋଧ କଲେ, ଋଷିପୁତ୍ରେ ରାଜା
ଲଭିବାକୁ ତପୋବଳ ।

ସେମାନେ କହିଲେ "ଯେଉଁ କାମ ପାଇଁ
ଅସମର୍ଥ ହେଲେ ପିତା
ପ୍ରକୃତି ନିୟମ ଲଘିଂବାକୁ ଆମେ
ନୋହୁ କେବେ ସମରଥା ।"
ରୋଷକ୍ଷିପ୍ତ ହେଲେ ରାଜା,
କହିଲେ, "ଆଜିଠୁ କରୁଅଛି ମୁହିଁ,
ଗୁରୁ ପରମ୍ପରା ତେଜ୍ୟା ।"

କ୍ରୋଧେ ଜର୍ଜରିତ ଋଷିପୁତ୍ର ଗଣ
ଅଭିଶାପ ଦେଲେ ରୋଷେ
"ହୋଇଯାଅ ତୁମେ ଚାଣ୍ଡାଳ, ରାଜନ୍ !
ପ୍ରଦୂଷିତ ବ୍ରହ୍ମ ଦୋଷେ ।"
ଆଖି ପିଛୁଳାକେ ରାଜଙ୍କ ଶରୀରୁ
ରାଜ ଶିରୀ ହେଲା ଲୋପ
ଡିବର୍ଣ୍ଣ ଦିଶିଲେ,ନୀଚ ମନା ହେଲେ
ବହିଲେ ଚଣ୍ଡାଳ ରୂପ ।

ତ୍ୟାଗ କଲେ ମନ୍ତ୍ରୀଗଣ,
ରାଜ ସିଂହାସନେ ଚଣ୍ଡାଳର ଏକ
ନାହିଁ ଅଧିକାର ପୁଣ ।
ତ୍ରିଶଙ୍କୁ ବିକଳେ ଶରଣ ପଶିଲେ
ବିଶ୍ୱାମିତ୍ର ଋଷି ପଦେ
କହିଲେ ତାଙ୍କର କରୁଣ କାହାଣୀ
ଘୋର ସନ୍ତାପିତ ହୃଦେ ।

"ଯୋଗଯଜ୍ଞ ବଳେ କରିବି ସାକାର
ସରଗ ସପନ ତୁମ
ସଶରୀରେ ତହିଁ ପଠାଇବି ମୁହିଁ
କରିବି ଦୁଃଖ ମୋଚନ ।"
ଆଶ୍ୱାସନା ଦେଇ ଯଜ୍ଞ ଆରମ୍ଭିଲେ ଋଷି,
ରାଜାଗଣ ତାଙ୍କ ନିମନ୍ତ୍ରଣ ପାଇ
ଯୋଗ ଦେଲେ ତହିଁ ଆସି ।

ବ୍ରହ୍ମର୍ଷି ବଶିଷ୍ଠ, ଋଷି ପୁତ୍ରଗଣ
ନ ଆସିଲେ ଯଜ୍ଞ ଥାନେ
ଚଣ୍ଡାଳ ରାଜାଙ୍କ ଯଜ୍ଞ ଉତ୍ସବକୁ,
ସ୍ୱର୍ଗର ଦେବତାମାନେ ।
ଭକ୍ଷଣ କରିବେ ନାହିଁ,
ହବିଷାନ୍ନ ଅବା ଯଜ୍ଞ ହବିପାନ
ନକରିବେ ତହିଁ ଯାଇ ।
କ୍ରୋଧ ଜର୍ଜରିତ ବିଶ୍ୱାମିତ୍ର ମୁନି
ଅଭିଶାପ ଦେଲେ ପୁଣ
'ନିଷାଦ ହୋଇବେ ମହର୍ଷି ବଶିଷ୍ଠ
ମ୍ଳେଛ ହେବେ ପୁତ୍ର ଗଣ ।'

ବ୍ରହ୍ମର୍ଷି ବଶିଷ୍ଠ ବ୍ରହ୍ମ ତେଜବଳେ
ଟାଳି ଦେଲେ ଅନ୍ଧକାର
ଶାପର ପ୍ରଭାବ ନପାରିଲା ପଡ଼ି
ଅଚିରେ ହୋଇଲା ଦୂର ।
ଯଜ୍ଞଯୋଗ ବଳେ ବିଶ୍ୱାମିତ୍ର ଋଷି
ତ୍ରିଶଙ୍କୁ ରାଜାଙ୍କୁ ନେଇ
ଶୂନ୍ୟେ ଉଠାଇଲେ ସଶରୀରେ ତାଙ୍କୁ
ସରଗେ ଥାପିବା ପାଇଁ ।

ଦେବରାଜ ଇନ୍ଦ୍ର ବାରଣ କରିଲେ
ନଦେଲେ ସରଗେ ଥାନ
ତଳ ଉପରର ମଝେ ରହି ସିଏ
ହୋଇଲେ ଦୋଦୁଲ୍ୟମାନ ।
ଉପରକୁ ଅବା ତଳକୁ ନ ପାରି ଯାଇ,
ବିଶ୍ୱାମିତ୍ର ଋଷି ଶୂନ୍ୟେ ରଚି ଦେଲେ
ସ୍ୱର୍ଗଟିଏ ତାଙ୍କ ପାଇଁ ।
ସଙ୍କଟ ସୁମରି ଦେବତାଏ ଆସି
ଋଷିଙ୍କୁ କଲେ ଗୁହାରି
"ମହର୍ଷି କହିଲେ ସେ ତହିଁ ଆବଦ୍ଧ,
ନ ହେବେ ଦେବତା ଅରି ।
ମର୍ତ୍ତ୍ୟକୁ ଫେରିବେ ନାହିଁ,
ଋଷି ବାକ୍ୟ କେବେ ଅନ୍ୟଥା ନହେବ
ପଠାଇ ଦେଇଛି ମୁହିଁ ।
ଦେବତାଏ ହେଲେ ତୋଷ,
ଦୂରହେଲା ତାଙ୍କ ଗୁରୁ ଅଭିମାନ ରୋଷ ।

୨୮/୯/୨୦୦୮
ଭୁବନେଶ୍ୱର

# ତାନ୍‌ସେନ୍

ତାଙ୍କ ନାଁ ଥିଲା 'ରାମତନୁ ପାଣ୍ଡେ'
'ଗ୍ୱାଲିଅର' ତାଙ୍କ ଘର
ଗଗନ ପବନ ଥରାଏ ତାଙ୍କର
ମଧୁ ସଂଗୀତ ସ୍ୱର ।
ବ୍ରାହ୍ମଣ ରାମତନୁ,
ହରିଦାସ ସ୍ୱାମୀ ଗୁରୁ ଥିଲେ ତାଙ୍କ
ବୈଷ୍ଣବ ବୃନ୍ଦାବନୁ ।

ପଣସ କାଠର ସରସ୍ୱତୀ ବୀଣା
ସବୁ ବେଳେ ଥାଏ ହାତେ
କୃଷ୍ଣ ସଂଗୀତେ ମଗ୍ନ ଥାନ୍ତି
ଭକ୍ତି ରସାଳ ଚିତ୍ତେ ।
ତାନ୍ ମାନ ସ୍ୱର ଲୟ –
ସ୍ୱର ସାଧନା ସେ ଶିଖିଲେ ତାଙ୍କଠୁ
ହେଲେ ସେ ବନ୍ଦନୀୟ ।

'ବାଘେଲା' ରାଜାଙ୍କ ରାଜ ଦରବାରରେ
ସଂଗୀତ ଶିରୋମଣି-
ନାମ ଚହଟିଲା, ସଂଗୀତ ତାଙ୍କ
ଜଡ଼ ପ୍ରାଣ ପାରେ ଜିଣି ।
ସେତେବେଳେ ଦିଲ୍ଲୀ ସିଂହାସନରେ
ସମ୍ରାଟ ଆକବର
ରାମତନୁଙ୍କର ସଂଗୀତ ଶୁଣି
ହୋଇଥିଲେ ଲୋଭାତୁର,
ଦିଲ୍ଲୀର ଦରବାରେ
ଆଣିବେ ତାହାଙ୍କୁ ଆଚାର୍ଯ୍ୟ ପଦେ
ସ୍ଥାନ ଦେବେ ରାଜପୁରେ ।

ହିନ୍ଦୁ ସେନାପତି ମାନସିଂ ଥିଲେ
ଏଥିରେ ଆଗ୍ରହୀ ଅତି
ଡକାଇ ଆଣିଲେ ଦିଲ୍ଲୀକୁ ସିଏ
ରାମ ତନୁ, ତାଙ୍କ କତି ।
ଭେଟିଲେ ସମ୍ରାଟଙ୍କୁ
ରାଜଦରବାରେ ସଂଗୀତଆସରେ
ବସାଇଲେ ଅତିଥିଙ୍କୁ ।

ଅନୁରୋଧ କଲେ ତୋଳିବାକୁ ତାଙ୍କୁ
ସଙ୍ଗୀତ ବୀଣା ତାରେ
ଶ୍ରୀରାଧା ବିରହ ସଙ୍ଗୀତ ଟିଏ,
ଗାଇଲେ ସେ ମଧୁ ସ୍ୱରେ,
ରାଜ ମନନେଲେ କିଣି
ଯେତେ ବସିଥିଲେ ପାରିଷଦଗଣ
ହୃଦୟକୁ ନେଲେ ଜିଣି ।

ସରବେ ହୋଇଲେ ସ୍ତବ୍ଧ ଚକିତ
ନିଜକୁ ଗଲେ ସେ ଭୁଲି
ବିରହିଣୀ ରାଧା ପାଲଟି ଗଲେ କି !
ବିଳାପେ ହୃଦୟ ଭରି ।
ନୟନୁ ଲୋତକ ଧାର,
ବହି ଆସୁଥିଲା, ଅନ୍ତର କଳା-
ଅଶ୍ରୁର ପାରାବାର ।

ସମ୍ରାଟ ତାଙ୍କୁ ସମ୍ମାନସହ
ବହୁ ଉପହାର ଦେଇ
କହିଲେ, "ଭଦ୍ର ମଣ୍ଡନ କର
ଦିଲ୍ଲୀ ଦରବାର ଏହି ।

ଆଚାର୍ଯ୍ୟ ପଦେ ବରଣ କରୁଛି
ଶିଖାଅ ସଙ୍ଗୀତ ରାଗ
ରାଜକୁମାରୀଙ୍କୁ, ସଙ୍ଗୀତେ ତାଙ୍କ
ବଳିଅଛି ଅନୁରାଗ ।

ରାଜାଦେଶ ପାଇ ରାମତନୁ ପାଣ୍ଡେ
'ସଙ୍ଗୀତ ଗୁରୁ' ପଦେ,
ଆକବରଙ୍କର ରାଜପରିଷଦ
ମଣ୍ଡନ କଲେ ମୁଦେ ।
ରାଜ ଦୁଲାଳୀଙ୍କୁ ଶିଖାଇଲେ, ରଚି
ସଙ୍ଗୀତ ସ୍ୱର ସଭା
ତାଳ, ମାନ,ଲୟ, ଛନ୍ଦ ବନ୍ଧ ସବୁ
ଆହା କି ସେ ମନଲୋଭା ।
ସେ ଥିଲେ ନବୀନ ରାଗ ସମ୍ରାଟ
ସ୍ରଷ୍ଟା ବିପ୍ଲବୀବୀର,
ରାଜକୁମାରୀଙ୍କ ଅନୁରୋଧେ, ଗୁରୁ-
ବରିଲେ ଧର୍ମାନ୍ତର ।
ହୋଇଲେ ମୁସଲମାନ,
ନାମ ବଦଳିଲା, ସେ ଦିନୁ ସେ ହେଲେ
'ତାନସେନ୍ ... ତାନ୍‌ସେନ୍' ।

ସମ୍ରାଟ ଦିନେ କହିଲେ, "ହେ କବି !
ମଧୁମୟ ତୁମ ସ୍ୱର
ତୁମ ସଙ୍ଗୀତେ ମୁଗ୍ଧ ମୁଁ ଅତି
ହୁଏ ମୁଁ ସ୍ୱପ୍ନାତୁର ।
ଭସାଇ ନିଅ ହେ ତୁମେ,
କେଉଁ ପୁରେ ନେଇ ପହଞ୍ଚାଇ ଦିଅ
ଅଦେଖା ସ୍ୱପ୍ନଭୂମେ ।

ତୁମ ଗୁରୁଙ୍କର ସଙ୍ଗୀତ ମୁହିଁ
ଶୁଣିଛି ପରାଣ ଭରି
ପ୍ରାଣପାତ୍ରେ ମୋ ପରଶି ଦେଇଛି
ପରମାନନ୍ଦ ବାରି ।
ଏଡ଼େ ସୁଧାମୟ ଧାରା !
ପ୍ଲାବିତ କରିଛି ପରାଣକୁ ମୋର,
ଚହଲାଇ ଦିଏ,
ପ୍ରାଣ ତନ୍ତ୍ରୀକୁ ପରା ।
କି ରହସ୍ୟ ଅଛି ତହିଁ ?
ବୁଝିବାକୁ ଯେତେ ଚେଷ୍ଟା କଲେ ବି
ବୁଝି ମୁଁ ପାରଇ ନାହିଁ ।"

ତାନ୍‌ସେନ୍ ଧୀର ଗମ୍ଭୀର କଣ୍ଠେ
କହିଲେ, 'ଶାହାନ୍ ଶାହା' !
'ଜାହାଁପନା'ଙ୍କ ତୃପ୍ତି ପାଇଁ ମୁଁ
ତୋଳେ ସଙ୍ଗୀତ ରାହା ।
ସମର୍ପଣର ସଙ୍ଗୀତ, ଗୁରୁ-
ଗାଆନ୍ତି, ଖୋଦାଙ୍କ ପାଇଁ
ଭାବ ତନ୍ମୟ ସେ ଭକତି ଗୀତ
ମୁଁ ଗାଇପାରିବି ନାହିଁ ।
ମୁଁ ଅଟଇ ଯଦି ସଙ୍ଗୀତ ସରୋବର,
ସେ ଅଟନ୍ତି ଭରା ଭକ୍ତିର ପାରାବାର ।

ତା ୩୦/୧୦/୨୦୦୮
ଭୁବନେଶ୍ୱର

# ପଣ୍ଡିତପ୍ରବର ଓ ମୂର୍ଖନାବିକ

ଥିଲେ ଜଣେ ପଣ୍ଡିତପ୍ରବର
ନାମ ତାଙ୍କ ଅଟେ' ବିଦ୍ୟାଧର' ।
ମଣୁଥିଲେ ନିଜକୁ ସେ
ଶ୍ରେଷ୍ଠ ଜ୍ଞାନୀ ଟିଏ,
କରୁଥିଲେ ହେୟଜ୍ଞାନ, ଆଉ ଯେତେଯିଏ ।

ଦିନେ ସିଏ ବାହାରିଲେ ଯିବେ ଗାଁ ଏକ
ନଦୀ କୂଳେ ପହଞ୍ଚିଲେ-
ଧରି ହାତେ ଜିନିଷ ଅନେକ ।
ଡଙ୍ଗାରେ ଲଦିଲେ ତାକୁ
ବସିଗଲେ ମଝି ବାଡ଼ା ପରେ,
ଚାଲିଲା ଡଙ୍ଗା ତୁରିତେ,
ପ୍ରଖରିତ ସେ ସ୍ରୋତ ମୁଖରେ ।

ଗଳାଝାଡ଼ି ଶ୍ଳୋକଟିଏ ଗାଇଲେ ପଣ୍ଡିତେ
ଆନନ୍ଦେ ଉଛୁଳେ ମନ ସୁଲୁସୁଲୁ ବାତେ ।
କହିଲେ, 'ନାଉରି ଭାଇ ! ଗାଅ ଗୀତଟିଏ,
ଯେପରି ଶ୍ଳୋକକୁ ମୋର ତାହା ଟପି ଯାଏ ।'

କହିଲା 'ନାଉରି, "ବାବୁ ! ଗୀତ ମୁଁ ଶିଖିନି
ଗାଇ ପାରିବନି କିଛି ପାଠ ବି ପଢ଼ିନି ।
ପାରିବିନି ମନତୋଷି ଗୀତ ଗାଇ ବାବୁ,
ମୋ ଗୀତ, ମୋ ମିତ ଅଟେ, ଏ ଡଙ୍ଗାଟି ସବୁ ।

ଗାଇବତ ଗାଅ ଶ୍ଳୋକ କିଛି,
ମଧୁର କଣ୍ଠ ତୁମର ମୋ ମନ ମୋହିଛି ।"

ପଣ୍ଡିତେ କହିଲେ, "ତେବେ,
ଜୀବନରୁ ବ୍ୟର୍ଥ ହେଲା ପାଏ
ବୋଲି ପାରିଲନି ଯଦି
ମନଫୁଲା ତୁମେ ଗୀତ ଟିଏ ।
ପଣ୍ଡିତମାନଙ୍କ ଶ୍ଳୋକ ଶୁଣିଥିବ
ନିଶ୍ଚୟ ନାଆରେ
ମନେଥିବ ଗାଅ ପଦେ,
ଖୋଲା ହୃଦୟରେ ।

"ପାରିବିନି ଗାଇ ଶ୍ଳୋକ,
ମୂର୍ଖ ଏକ ନାଉରିଆ ମୁହିଁ,
ଶ୍ଳୋକ ସବୁ ସହଜରେ
ମୋ ପାଟିରେ ଧରା ଦେବେନାହିଁ ।
ଉଚ୍ଚାରଣ ପାରିବିନି କରି,
ଗାଇବାକୁ କୁହ ନାହିଁ
ଡଙ୍ଗା ଏଣେ ହୁଏ ଫିରିଫିରି ।"

"ବ୍ୟର୍ଥ ହୋଇଗଲା ତେବେ ଜୀବନରୁ ଅଧା
ନାବିକ ଜନମ ପାଇ ନାହିଁ ଗୀତେ ଶ୍ରଦ୍ଧା !
ଗାଅ ତେବେ ପଦେ ଅଧେ ଢଗଢମାଳିରୁ
କଥା ସାଥେ ଲଥା ଚାଲେ ସଭିଙ୍କ ପାଟିରୁ ।"

"ଥଟ୍ଟା ପରିହାସ କଥା ଟାହୁଲି ଟାପରା
କେତେ ମନ ଭାଙ୍ଗି ଦେଇ କରଇ ଖପରା ।
ଢଗଢମାଳିଆ କଥା ଭାଙ୍ଗେ କେତେ ଘର
ଯେତେ ଖୁସି ହେଲେ ମଧ୍ୟ ତାକୁ ମୋର ଡର ।
ଢଗରେ ଢଗରେ ଫିଟେ ଗୁମର ଅନେକ
ନାବିକଟିଏ ମୁଁ ଖାଲି, ମୁଁ ମୂର୍ଖ ନାବିକ ।"

ପଣ୍ଡିତେ କହିଲେ, "ଆହା କି କଲ କି କଲ
ଜୀବନର ତିନିଭାଗ ବ୍ୟର୍ଥ କରିଦେଲ !
ତୁମକୁ ତ କିଛି ଜଣା ନାହିଁ,
ଜୀବନର ସରସତା ସାରିଦେଲ-
ଡଙ୍ଗା ବାହି ବାହି ?

ଡଙ୍ଗା ହେଲା ଟଳମଳ ସୁଅ ମୁହେଁ ପଡ଼ି
ହେଲା ନାହିଁ ଥିର ତାହା ଯେତେ ଚେଷ୍ଟା କରି,
ଭଉଁରୀରେ ଗଲା ପଡ଼ି ଭାସିଯାଇ ସୁଏ
ବୁଡ଼ିଯିବ କ୍ଷଣକରେ ରଖିବ ବା କିଏ ?

ଗୋଟା ପଣେ ଥରୁଥାଏ ପଣ୍ଡିତଙ୍କ ଦେହ
ଆସନ୍ନ ପ୍ରମାଦେ ଆଖି ଛଳ ଛଳ ଲୁହ,
ବିକଳରେ ମୁହଁ ତାଙ୍କ ଦିଶିଲା ଛାନିଆ,
ନେତ୍ରୁ ନୀର ଗଡ଼ି ଆସେ ହୋଇ ଅମାନିଆ ।
କହିଲେ କ୍ରୋଧରେ,
'ଚଳାଇ ଶିଖିନ ମଧ୍ୟ ଡଙ୍ଗାକୁ ସୁଅରେ' !

ନାବିକ କହିଲା ବାବୁ "ଡେଇଁବା ନଈକୁ
ପହଁରି ପହଁରି ଯିବା ଆମେ ସେ କୂଳକୁ ।
ବଞ୍ଚିବାର ନାହିଁ କିଛି ବାଟ,
ପହଁରି ପାରିଲେ ଏକା ଟଳିବ ସଙ୍କଟ ।
ବିଦ୍ୟାଧର ପଣ୍ଡିତଙ୍କ ବୁଦ୍ଧି ହେଲା ବଣା
କହିଲେ, "ପହଁରା, ବାବୁ ନାହିଁ ମୋତେ ଜଣା ।"

"ତାହା ହେଲେ ଧର ମୋର ଅଣ୍ଟାକୁ
ବ୍ୟର୍ଥ ହୋଇଯିବ ପ୍ରାଣ, ନ ଧରିଲେ ଭିଡ଼ି ।
କର ନାହିଁ ନାହିଁ,
ଏ କରାଳ ସ୍ରୋତ ଟାଳି ପହଁରିବି ମୁହିଁ ।
'ରକ୍ଷାକର ପ୍ରଭୁ!' କହି ଦେଲା ସିଏ ଲମ୍ଫ
ବିଦ୍ୟାଧର ପଣ୍ଡିତଙ୍କ ବଢିଲା ହୃତ୍‌କମ୍ପ ।
ବଞ୍ଚିଗଲା ପ୍ରାଣ,
ସେ ମୂର୍ଖ ନାବିକ, ଅଟେ ତାଙ୍କ ଆର୍ତ୍ତତ୍ରାଣ ॥

ତା ୫/୧୧/୨୦୦୮
ଆଠମଲ୍ଲିକ

# ଚରିତ୍ରବଳ

ଚନ୍ଦ୍ରଶେଖର ଭେଙ୍କଟରମଣ
ଆମ ଭାରତର ଗର୍ବ
ପଦାର୍ଥ ବିଜ୍ଞାନେ ନୋବେଲ ବିଜେତା
ମଣ୍ଡିତ ଗୁଣେ ସର୍ବ ।
ଥିଲେ ସେ ଉଦାରମନା,
କ୍ରୋଧ ଅହଂକାର ନଥିଲା ତାଙ୍କର
ନହୁଅନ୍ତି ନୀତି ବଣା ।
ପଦାର୍ଥ ବିଜ୍ଞାନ ଅନୁଷ୍ଠାନର ସେ
ଥିଲେ ସର୍ବୋଚ୍ଚକର୍ତ୍ତା
ବେଙ୍ଗାଲୁରରୁ ବିଜ୍ଞାନେ ସିଏ
ଦେଉଥିଲେ ନୂଆବାର୍ତ୍ତା ।
ଚକିତ ବିଶ୍ୱବାସୀ,
ପରାଟୀ ପ୍ରତିଭା ସବୁରି ମନରେ
ଭରେ ଆଶା ଫୁଲ କଷି ।
ସରଳ ଶାନ୍ତ ମଧୁର ବଚନ
ଆଚରଣ ଅତି ଭଦ୍ର,
ଜୀବନରେ ସିଏ ଖୋଜନ୍ତିନି କା'ର
ତ୍ରୁଟି ବିଚ୍ୟୁତି ଛିଦ୍ର ।
ମହାନ୍ ମଣିଷଟିଏ,
ବିରଳ ତାଙ୍କର ବ୍ୟକ୍ତିତ୍ୱ ଥିଲା
ସଦା ଆଦର୍ଶ ସିଏ ।
ତାଙ୍କ ଅନୁଷ୍ଠାନେ ପୂରଣ ହେବାକୁ
ନୂଆ ପଦ ଥିଲା ଖାଲି,
ବିଜ୍ଞପିଲେ ସେ, ଚୟନ କରିବେ
ଯୋଗ୍ୟ ପ୍ରାର୍ଥୀ ବୋଲି ।

ଉପଗତ ହେଲା ସାକ୍ଷାତ୍କାର ଦିନ
ଜଣ ଜଣ କରି ପରୀକ୍ଷା କଲେ
ପଚାରି ପ୍ରଶ୍ନ ମାନ ।

ଦେଇ ପାରିଲାନି ଉତ୍ତର ସବୁ
ସେ ଦିନ ଯୁବକଟିଏ,
ଛିଡ଼ା ହୋଇଥିଲା ଶୁଖାଇ ମୁହଁକୁ
ଚାହିଁ ତାଙ୍କୁ ଏକ ଲୟେ ।
ବୁଝାଇ କହିଲେ,ବାବୁ !
ବିଫଳତା ପାଇଁ ଦୁଃଖ କରନି
ସରିନି ସୁଯୋଗ ସବୁ ।
ଆଉ କିଛି କାମେ ଚେଷ୍ଟା କର ହେ ଯାଇ
ସଫଳ ହୋଇବ ଉଦ୍ୟମ କଲେ,
'ହାରିଗଲି' ଭାବ ନାହିଁ ।

ମୁହଁ ପୋତି ଧୀରେ ବାହାରି ଆସିଲା
ଯୁବକଟି ବାହାରକୁ
ପ୍ରତୀକ୍ଷା କକ୍ଷେ ଅପେକ୍ଷା କଲା
ଆଉ କା'ରେ ଭେଟିବାକୁ ।
ମନରେ ନ ଥାଏ ସୁଖ
ଜାଣିଥାଇ କିଛି ନ ପାରିଲା କହି
ଏହା ତା' ମନରେ ଦୁଃଖ ।
ସେଇବାଟ ଦେଇ ଫେରିଲେ ରମଣ
ଦୀର୍ଘ ସମୟ ପରେ
ବିବ୍ରତେ ତହିଁ ବସିଛି ପିଲାଟି
ଗମ୍ଭୀରେ ମଉନରେ ।

ପଚାରିଲେ ତାକୁ ଡ଼ାକି,
କହିଥିଲି ପରା ଫେରିଯିବା ପାଇଁ
କି' କାମ ରହିଛି ବାକି ?

ନମ୍ର ମଧୁର ନମିତ ନୟନେ
କହିଲା ଯୁବକ ଧୀରେ,
କିରାଣି ବାବୁଙ୍କୁ ଅପେକ୍ଷା କରି ମୁଁ
ବସିଅଛି ଏଇଠାରେ ।
ଗସ୍ତ ଖରଚ ଦେଇଛନ୍ତି ବେଶି
ଭୁଲରେ ଦଶ ଟଙ୍କା,
ଫେରାଇବି ବୋଲି ଅପେକ୍ଷା କରିଛି
ମିଳିବ ଏଠାରେ ଦେଖା ।
ଯାଇଛନ୍ତି ବାହାରକୁ ,
ଫେରାଇବା ପାଇଁ ଅପେକ୍ଷା କରିଛି-
ଏଇ ବାଟେ ଫେରିବାକୁ ।
ଉଠିଯିବି ଏଠୁ ଆଉ କେଉଁଠିକୁ ଅପେକ୍ଷା କରିବି ତହିଁ
କ୍ଷମା ଦେବେ ମୋତେ, ବାଧା ଦେଲି ପଥେ, ଯାଉଅଛି ଉଠି ମୁହିଁ ।
ରମଣ ଚାହିଁଲେ ସ୍ତବ୍ଧ ଚକିତେ ତାକୁ,
କହିଲେ, "ଯୋଗ୍ୟ ବିବେଚିତ ହେଲ ନୂଆ ପଦ ପାଇବାକୁ ।
ନିଯୁକ୍ତିପତ୍ର ନେଇଯିବ, ଥାଅ ବସି"
ଫେରିଲେ ରମଣ ଦପ୍ତରେ ପୁଣି, ଯୁବକ ହୋଇଲା ଖୁସି ।
ଚରିତ୍ରବାନର ଅଟେ ଏହା ପୁରସ୍କାର,
ନମ୍ର ମଧୁର ଆଚରଣ ସବୁ ଦୁଃଖ କରଇ ଦୂର ।

୨୩/୧୨/୨୦୦୮
ଭୁବନେଶ୍ୱର

# ନଚିକେତା

ନାମ ତାଙ୍କ 'ବାଜଶ୍ରବା' ଋଷି
ତପୋବଳେ ବଳୀୟାନ, ଧର୍ମବଳେ ମହୀୟାନ୍
ଦୁର୍ବାର ପ୍ରଚଣ୍ଡ କୋପୀ ଅଟନ୍ତି ମହର୍ଷି ।
ସେ ଦିନ ସେ ଯଜ୍ଞ କର୍ମେ ନିବିଷ୍ଟ ଚିତ୍ତରେ
ବସିଥିଲେ ଧ୍ୟାନମଗ୍ନେ ବିଭୁ ଚିନ୍ତନରେ
ଦେବ ଗଣେ ଅରପି ଆହୁତି,
ଯଜ୍ଞ ଶେଷେ ସର୍ବଦେବେ ଦେଲେ ପୂର୍ଣ୍ଣାହୁତି ।

ଦକ୍ଷିଣାଯଜ୍ଞ ଏଥର ହୋଇଲା ଆରମ୍ଭ
ଆଗନ୍ତୁକେ ଦେଉଥାନ୍ତି ଦ୍ରବ୍ୟ ନବ ନବ,
ଏତେ ବେଳେ ଶିଶୁପୁତ୍ର ନଚିକେତା ଆସି
ପ୍ରଶ୍ନ ପରେ ପ୍ରଶ୍ନ ତାଙ୍କୁ ପଚାରଇ ହସି ।

ଆକଟି କହିଲେ ପିତା, ବ୍ୟସ୍ତ ମୋତେ କରନା ଏ ବେଳେ
ଦାନ ଯଜ୍ଞ ଚାଲିଅଛି, ଚୁପ୍ କର, କାମେ ବାଧା ପଡ଼େ ।
ଚୁପ୍ ହୋଇଯାଇ କ୍ଷଣେ, ଚାହିଁଲା ପିତାଙ୍କୁ
ପ୍ରଶ୍ନ ପରେ ପ୍ରଶ୍ନ ପୁଣି ପଚାରିଲା ତାଙ୍କୁ ।
କ୍ରୋଧେ ହୋଇ ଜର୍ଜରିତ କହିଲେ, ମହର୍ଷି
ଯମଙ୍କୁ ଅର୍ପୁଛି ତୋତେ, ହୋଇଯା' ଯମପୁର ବାସୀ ।
ଦାନ ଯଜ୍ଞେ ମୋର -
ପୂର୍ଣ୍ଣାହୁତି ପଡୁ, ତୋତେ କରିଦେଇ ଦୂର ।
ପୁତ୍ର ନଚିକେତା ତହୁଁ ଅଶ୍ରୁନେତ୍ରେ ପିତାଙ୍କ ପୟରେ
ପ୍ରଣମି, ବିଦାୟ ଯାତ୍ରା ଆରମ୍ଭିଲା ଯମରାଜା ପୁରେ ।

ପ୍ରବେଶିଲା ପୁର ମଧ୍ୟେ, ବନ୍ଦଥିଲା ଦ୍ୱାର
ବିସ୍ମିତ ହୋଇଲେ ତାକୁ ଦେଖି ଦ୍ୱାରପାଳ ।
ଆସିଲା କିପରି ଏଠି ଜୀବନ୍ତ ଏ ପିଲା
ପଚାରିଲେ ତାକୁ, ସିଏ ନିର୍ଭୟେ କହିଲା,
"ଯମ ଦେବତାଙ୍କୁ ପିତା ଅର୍ପିଛନ୍ତି ମୋତେ,
ମୁଁ ଆସିଛି ଏକଲୟେ ଯମାଳୟ ପଥେ
ଦୟାକରି ଖୋଲିଦିଅ ଦ୍ୱାର,
ଯମରାଜେ ଭେଟିବାକୁ ହେଉଛି ଉତ୍ସୁର ।"

କହିଲେ ସେ ଦ୍ୱାରପାଳ, ଶିଶୁକୁ ବୁଝାଇ
"ଅଟେ ଏ ମରଣପୁର,ସଶରୀରେ ଅସିଛ ପଳାଇ
ଯାଅ ଫେରି ଘରେ,
ଚାହିଁଥିବେ ମାତାପିତା ସତୃଷ୍ଣ ନେତ୍ରରେ ।
ଦର୍ଶନ ଦିଅନ୍ତି ନାହିଁ ଯମରାଜ ଜୀବନ୍ତ ଜୀବକୁ
ହେ ବାଳକ ଫେରିଯାଅ,
ଯାଅ ବେଗେ ମର୍ତ୍ତ୍ୟ ଆଳୟକୁ ।"
କହିଲା ବାଳକ ଦୃଢେ,
"ଯମ ଦେବତାଙ୍କୁ ଯିଏ ଅର୍ପିତ, ସେ ମୃତ,
ବାହୁଡ଼ି ଯିବିନି ଗୃହେ ଯେଣୁ ସମର୍ପିତ ।"
ଛିଡ଼ା ହୋଇରହିଲା ସେ କା' କଥା ନ ମାନି
ତିନିଦିନ ତିନିରାତି ଏକ ଲୟେ ରହିଲା ସେ ପୁଣି ।
ଖୋଲିଗଲା ଦ୍ୱାର ଶେଷେ -
ନଚିକେତା ହୋଇଲା ପ୍ରବେଶ,
ସିଂହାସନେ ବିଜେକଲେ ଯମରାଜା
ନୀଳବର୍ଣ୍ଣ ଉଜ୍ଜ୍ୱଳ ପୁରୁଷ ।

ଶାନ୍ତ ସ୍ନିଗ୍ଧ ଦିବ୍ୟ ରୂପ ଧରି
ପଚାରିଲେ ଯମରାଜା ସ୍ନେହସିକ୍ତ ମଧୁକଣ୍ଠ ଟେକି ।
"କିଏ ତୁମେ, କିମ୍ପାଇ ଆସିଛ ଏଥି ଜୀବନ୍ତ ରୂପରେ
ଭୟଙ୍କର ଏ ମରଣପୁରେ ?"
"ପ୍ରଭୁ ! ନାମ ମୋର ନଚିକେତା
ବାଜଶ୍ରବା ଋଷିଙ୍କ ତନୟ,
ଅସନ୍ତୁଷ୍ଟ କଲି ବୋଲି ପିତା ମୋତେ
ପଠାଇଲେ ଏ ଯମ ଆଳୟ ।
ଗ୍ରହଣ କରନ୍ତୁ ପ୍ରଭୁ ! ଦୀନ ଅକିଞ୍ଚନେ
ସୁଯୋଗ ଦିଅନ୍ତୁ ପିତୃ ଆଜ୍ଞା ମୁଁ ପାଳନେ ।"

"ଧନ୍ୟ ଧନ୍ୟ ନଚିକେତା ଧନ୍ୟ ତୁମ ପିତୃଭକ୍ତି ପଣ
ସନ୍ତୁଷ୍ଟ ହୋଇଛି ମୁହିଁ ତିନିବର ମାଗିନିଅ ପୁଣ ।
ଆଶୀର୍ବାଦ ଦେଉଛି ତୁମକୁ,
ବର ପାଇ ଫେରି ଯାଅ ପିତୃ ଆଳୟକୁ ।"
ଜୀବନର ଯାତ୍ରା ତୁମ ସରିନାହିଁ ଏବେ
ସମାପ୍ତ ହୋଇଲେ, ଏଥି ଫେରିବ ହେ ତେବେ ।

"ପିତୃଆଜ୍ଞା ପାଳି ମୁହିଁ, ଆସିଥିଲି ପ୍ରଭୁଙ୍କ ଆଳୟେ
ମର୍ତ୍ତ୍ୟକୁ ଫେରାଇ ଦିଅ ଯମରାଜ ଶିଷ୍ୟ ପରିଚୟେ-
ଶିଷ୍ୟ ରୂପେ କରି ହେ ଗ୍ରହଣ,
ମୃତ୍ୟୁଞ୍ଜୟ ମନ୍ତ୍ର ଦାନେ ଏ ଜୀବନ କର ମୋର ଧନ୍ୟ ।
ସେ ଦିବ୍ୟ ବିଭୂତି,
ସଂଚର କରହେ ପ୍ରାଣେ ଦେବତାର ଦିବ୍ୟ ଅନୁଭୂତି
ଫେରିଗଲେ ପିତା ମୋତେ କରନ୍ତୁ ଗ୍ରହଣ
ମୁଁ ଅଟେ ତାଙ୍କର ଯମ ସମର୍ପିତ ଧନ ।"

"ମୃତ୍ୟୁଞ୍ଜୟ ମନ୍ତ୍ର ବାବୁ ନ ପାରିବି ଦେଇ
ନିଷିଦ୍ଧ ଅଟେ ଏ ମନ୍ତ୍ର ନରଲୋକ ପାଇଁ,
ମାଗ ଅନ୍ୟବର,
ବିଶ୍ୱମାନବ ସମ୍ମତ ଯାହା ଶ୍ରେୟସ୍କର ।

ନିର୍ଭୟେ କହିଲା, 'ପ୍ରଭୁ ! ଅନ୍ୟ ବର ଲୋଡ଼ା ନାହିଁ କିଛି
ଦିଅନ୍ତୁ ବା ନ ଦିଅନ୍ତୁ ମୁଁ ଯାହା ମାଗିଛି ।'
ବିସ୍ମିତ ମୋହିତ ହୋଇ ଯମରାଜ 'ତଥାସ୍ତୁ' କହିଲେ
ମୃତ୍ୟୁଞ୍ଜୟୀ ହୋଇ ପୁତ୍ର ଆଶ୍ରମେ ଫେରିଲେ ।
କୋଳାଗ୍ରତ କଲେ ମାତା ପିତା,
ଚୁମ୍ବିଲେ କୋଳକୁ ନେଇ ପୁତ୍ର, 'ନଚିକେତା'
ପିତୃ ଆଜ୍ଞା ପାଳି ହେଲେ, ଅଜର ଅମର
ଆଜି ମଧ୍ୟ ପ୍ରାଣମୟ ଚେତନ ଶରୀର ।

୨୭/୧୨/୨୦୦୮
ଭୁବନେଶ୍ୱର

# ମନ୍ତ୍ରୀଙ୍କ ଟିପାଖାତା

ଆରବ ଦେଶରେ ମହାନ ଉଦାର
'ନବାବ' ଥିଲେ ଯେ ଜଣେ
ପୁତ୍ର ସମସିଏ ପ୍ରଜା ପାଳୁଥିଲେ
ଦୁଃଖ ନଥିଲା କା'ମନେ ।
ମନ୍ତ୍ରୀ ତାଙ୍କର ଅତି ଜ୍ଞାନୀ ମାନୀ
ଅଟନ୍ତି ଜିଜ୍ଞାସୁ ବ୍ୟକ୍ତି,
ଗ୍ରନ୍ଥ ଅଧ୍ୟୟନେ ପାଆନ୍ତି ଆନନ୍ଦ
ଅଦମ୍ୟ ପୁସ୍ତକ ପ୍ରୀତି ।
ରାଜାଙ୍କର ଥାଏ ଗଭୀର ସମ୍ମାନ
ମନ୍ତ୍ରୀଙ୍କର ଜ୍ଞାନ ମୁଗ୍ଧ,
ତୋଷାମଦକାରୀ ମାନଙ୍କ ଅନ୍ତରେ
କରେ ଏହା ଶେଳବିଦ୍ଧ ।
ତାଙ୍କୁ ହଟାଇବେ ବୋଲି,
ଉପାୟ ସେମାନେ ଖୋଜି ବୁଲୁଥିଲେ
ମନେ ହେଉଥିଲେ ଭାଳି ।

ନବାବଙ୍କୁ ଦିନେ, ଚାଟୁକାରମାନେ
କାନରେ କହିଲେ ତୁନି,
ଆମ ଛୋଟ କଥା ରଖିଲେ ମଣିମା
ଲଭିବେ ଅମର ମଣି ।
ମହାମନ୍ତ୍ରୀ ଆଜି ପ୍ରବଳ ପ୍ରତାପୀ
ଜ୍ଞାନେ ମାନେ ଅତିବଡ଼,
ଆଶଙ୍କା କରୁଛୁ, ଦିନେ ମଣିମାଙ୍କ
ପଥେ ସୃଷ୍ଟି ହେବ ଝଡ଼ ।

ମନ୍ତ୍ରୀଙ୍କର ଟିପା ଖାତାଟି ଅଟଇ
ଧନ ଦଉଲତ ଖଣି,
ସେଥିରେ ରହିଛି ଅତଳ ଗରଭେ
ଗୁପତେ 'ଅମର ମଣି ।'
ଅମୂଲ୍ୟ ବିଭବ କେତେ,
ଗ୍ରନ୍ଥପାଠ କରି ଟିପି ରଖିଛନ୍ତି
ମହାମନ୍ତ୍ର ସବୁ ଯେତେ ।
ତାହା ବଳେ ସିଏ ବଳିୟାନ୍ ଆଜି
ଧରାକୁ ମଣନ୍ତି ସରା,
ବେଳହୁଁ ମଣିମା ସାବଧାନ ହେଲେ
ବିପଦ ଟଳିବ ପରା ।

ନବାବ କହିଲେ ଉପାୟ କି ଅଛି
ମନଖୋଲି କୁହ ଭଲେ,
ମହାମନ୍ତ୍ରୀଙ୍କର ମାନ ସମ୍ମାନକୁ
ନପକାଇ ତିଳେ ତଳେ ।
ଖନି ବାଜିଗଲା ସେମାନଙ୍କ ପାଟି
ଓଠ ଚାଟି ହାତ ମଳି,
କହିଲେ ଖାତାଟି ହାତେଇ ପାରିଲେ
ସବୁ ରିଷ୍ଟ ଯିବ ଟଳି ।
ଯଶ ରଖି କାଳେ କାଳେ
ଅମର ହୋଇବେ ବିଶ୍ୱ ଭୁବନେ
ଶୋଭାପାଇ ଜୟମାଳେ ।
ସେ ମଧୁର ଚାଟୁ ଚଟୁଳ ବଚନେ
ଟଳିଗଲା ରାଜମନ,
ମନ୍ତ୍ରୀଙ୍କୁ ଡ଼କାଇ କହିଲେ ନବାବ
"ଆଜି ଏକ ଶୁଭଦିନ ।

ଆଶାକରେ ମନ୍ତ୍ରୀ ଦିବ୍ୟ ଉପହାର
ଅରପିବେ ଶ୍ରଦ୍ଧାଭରେ,
ଶୁଭ ଅନୁଷ୍ଠାନେ ଯୋଗ ଦେବେ ଆସି
ସଭାସଦ ଗହଣରେ ।"

ବିନୀତ କଣ୍ଠରେ କହିଲେ ସଚିବ,
'କି ଦେଇ ତୋଷିବି ମନ
ଏ ଧନ ସଂପଦ ବିଭବ ବିଭୂତି
ସବୁ ଅଟେ ତବ ଧନ -
କେଉଁ ଉପହାର ଦେଇ,
ମଣିମାଙ୍କ ମନେ ଆନନ୍ଦ ଆଣିବି
ତୃପ୍ତହେବେ ନରସାଇଁ !"

'ଯାହା ପ୍ରିୟ ବସ୍ତୁ କର ଅରପଣ
ମୋ ମନ ଆନନ୍ଦ ପାଇଁ,
ନୀତି କଥା କହି ବାରଣ କରନି
କରନାହିଁ ତୁମେ ନାହିଁ ।'

"ମୋ ଉଦ୍ୟାନ ଗୋଟି, ପ୍ରିୟ ଭବନଟି
ଅତି ପ୍ରିୟତର ମୋର,
ନିବେଦୁଛି ତାହା ତବ ଶ୍ରୀପୟରେ
ଘେନାହେଉ ଉପହାର ।"
'ତାହା ନୁହେଁ ପ୍ରାଣ ପ୍ରିୟତର ତୁମ
'ଟିପାଖାତା' ଦିଅ ମୋତେ,
ତାହା ହେବ ତୁମ ଶ୍ରେଷ୍ଠ ଉପହାର
ମହାମାନ୍ୟ ରାଜ ପଦେ ।'

'ନପାରିବି ଦେଇ ସେ ମହାଧନକୁ
ପ୍ରାଣଧନ ତାହା ମୋର,
ବନ୍ଧା ହୋଇଅଛି ତା'ର ଆତ୍ମ ସାଥେ
ମୋର ଏହି ପ୍ରାଣ ଡୋର-
ହରାଇବି ଯଦି ତାହା,
ଜ୍ଞାନ ନଷ୍ଟ ହେବ ନୀତି ଭ୍ରଷ୍ଟ ହେବ
ଭୁଲିଯିବି ନ୍ୟାୟ ରାହା ।"

'ମହାଧନ' ପାଇଁ ଯୋଗ୍ୟ ଏକା ରାଜା
କେହି ନୁହଁ ଭାଗୀଦାର,
ତାଙ୍କଠାରେ ତାହା ରହିବା ଅଟଇ
ସବୁଠାରୁ ଶ୍ରେୟସ୍କର ।
ତୁମେ ଅଟ ଜ୍ଞାନୀ ଜନ,
କିସ ବୁଝାଇବି,ବୁଝିଛତ ସବୁ
କରିଦିଅ ଅରପଣ ।

ମନ୍ତ୍ରୀ ମୁରୁଛିଲେ ମମତା ତାଙ୍କର
ପ୍ରାଣ ପୋଥି ଦେଲେ ଟେକି,
ଚାହୁଁ ଚାହୁଁ ତଳେ କଚାଡ଼ି ପଡ଼ିଲେ
କି ଘଟିଲା ଆହା ଏକି ?
ସବୁ ହୋଇଗଲା ଶେଷ,
ତୋଷମଦକାରୀ ଆନନ୍ଦିତ ହେଲେ
ରାଜ ମନେ ଅବସୋସ ।

# ମହା ପ୍ରାଚୀର

ଏସିଆର ଚାରିଭାଗୁ, ଏକ ଭାଗ,
ଅଟଇ ଚାଇନା ଦେଶ,
ସମଗ୍ର ଇଉରୋପ ମହାଦେଶୁ ବଡ଼
ବହୁଲୋକଙ୍କର ବାସ ।
ଘନଜନ ବସତିରେ ପରିପୂର୍ଣ୍ଣ,
ଅଛନ୍ତି ଏପରି ନର-
ସାରା ଜୀବନଟା ବିତାଇ ଦିଅନ୍ତି
ନଉକାରେ କରି ଘର ।

ଆଗେଥିଲା ଏଠି କେତେ ରାଜତନ୍ତ୍ର
ରଜା ପାଳୁଥିଲେ ପ୍ରଜା,
ଗଣତନ୍ତ୍ର ଏବେ ଶାସନ ଚଳାଏ
'ଲାଲ୍‌ଚୀନ'ଲାଲ୍‌ଧ୍ୱଜା ।
ଦୀର୍ଘ ଅତୀତର ପ୍ରଥମ ସମ୍ରାଟ
'ହୁଆଂତି' ତାଙ୍କର ନାମ,
ପ୍ରଚଣ୍ଡ ପ୍ରତାପୀ ରାଜ୍ୟ ସବୁଜିଣି
ହେଲେ ଚକ୍ରବର୍ତ୍ତୀ ପୁଣ ।

ରାଣୀଙ୍କର ନାମ ଅଟଇ 'ସିଲିଂ'
ଥିଲେ ଅତି ବୁଦ୍ଧିମତୀ
ତୁତ୍ ଗଛ ଚାଷ, ରେଶମ ଚାଷରେ
ଟାଣିଲେ ପ୍ରଜାଙ୍କ ମତି ।
କୃଷି କର୍ମ କରି ବ୍ୟବସାୟ ଖୋଲି
ଆନନ୍ଦେ ରହିଲେ ପ୍ରଜା,
ଆନ୍ଦୋଳନ କେବେ ମୁଣ୍ଡ ଟେକିଲାନି
ଆନନ୍ଦିତ ଅତି ରଜା ।

ବେଢ଼ି ରହିଥିଲେ ଚାଟୁକାରୀ ଦଳ
ଚଉପାଶେ ରାଜାଙ୍କର,
ମିଠାମିଠା କଥା କହି, ରାଜମନ
ତୋଷୁଥିଲେ ନିରନ୍ତର ।
ରାଜା ଛିଙ୍କି ଦେଲେ ସରଦି ଭୋଗନ୍ତି
ତାଙ୍କ ଚଉପାଶ ଜନ,
ହାଇ ମାରିଦେଲେ ପୁଟୁକି ମାରନ୍ତି
ଝାଳ ବହେ ଗମ୍ ଗମ୍ ।
ନିଶକୁ ଦରପେ ହଲାଇ ଦେଲେ ସେ
ଭୟେ ଥରେ ଦୁକୁଦୁକି,
ହାତ ମଳି ମଳି ଓଠ ଚାଟି ଚାଟି
ଛେପ ତାଙ୍କ ଢୋକି ଢୋକି-
ଲୋଟିଯାନ୍ତି ପଦ ତଳେ,
ହସି ଦେଲେ ରାଜା, ସଳଖି ଉଠନ୍ତି-
ତୋଷାମଦକାରୀ ଦଳେ ।
କହନ୍ତି, "ସମ୍ରାଟ ପଣରେ କେ ଶ୍ରେଷ୍ଠ
ଆମ ମଣିମାଙ୍କୁ ବଳି
କ୍ଷୁଦ୍ରାଦପି କ୍ଷୁଦ୍ର ଅଟନ୍ତି ସରବେ
କାହାକୁ କା' ସାଥେ ତୁଳି !
ଗଢା ହେଉଥାଏ ସୀମା ରକ୍ଷା ପାଇଁ
ସୁଦୀର୍ଘ ପ୍ରାଚୀର ଏକ
ଅଢେଇ ହଜାର କିଲୋମିଟର, ତା'-
ଉଚ୍ଚତା ତିରିଶି ଫୁଟ ।
ପୃଥିବୀର ଶ୍ରେଷ୍ଠ ସପ୍ତାଶ୍ଚର୍ଯ୍ୟ ମଧ୍ୟେ
ଏକ ବୋଲି ହୁଏ ଗଣା
ସେ ମହାପ୍ରାଚୀର ଗର୍ଭେ ଧରିଅଛି
ଯୁଗ ଯୁଗର ଯନ୍ତ୍ରଣା ।

ସମ୍ରାଟଙ୍କୁ ଦିନେ ଗୁପତେ ଭେଟିଲେ
ମନ୍ତ୍ରୀବର ଅନ୍ତଃପୁରେ
ଗହନ କଥାଏ କହିବି ମଣିମା
କହିଛନ୍ତି ଗୁପ୍ତଚରେ ।
ପାଠପଢି ପ୍ରଜା ଉନ୍ନତ ହେଲେଣି
ବଢୁଛି ବିଚାର ବୁଦ୍ଧି
ଚାଲାକ ଚତୁର ହେଲେଣି ଏଥର
ନଟକୂଟେ ହେବେ ଛନ୍ଦି ।
ବିଦ୍ରୋହ କରିବେ ମିଳି,
ବିପ୍ଳବ କରିବେ, ରାଜଦ୍ରୋହୀ ହେବେ,
ପ୍ରତିକାର ହୁଏ ଭାଳି ।

ରାଜା ସବୁ ଶୁଣି ଚିନ୍ତିତ ମନରେ
ପଚାରିଲେ ମନ୍ତ୍ରୀବର ।
"କୁହ ଏଥିପାଇଁ କି କରିବା ତେବେ
ଦୀର୍ଘସ୍ଥାୟୀ ପ୍ରତିକାର ?"
"ମନ୍ତ୍ରୀ କହିଲେ, ବିଶାଳ ବାହିନୀ
ପାରିବେ ଦମନ କରି
ବାଟ ପାଉଛନ୍ତି ନାଟ କରିବାକୁ
ପ୍ରଜାଗଣ ପାଠପଢି,
ଖେତେ କାମ କରି ଖାଇପିଇ ସୁଖେ
ରହନ୍ତୁ, ତାଙ୍କର କାମ-
ରାଜ କର ଦେଲ, କରମୁକ୍ତ ହୋଇ,
ଆନନ୍ଦରେ କଟୁ ଦିନ ।
ପାଠ ପଢ଼ିବାକୁ ଯହିଁ ଅଛି ଯେତେ ବହି
ଅଗ୍ନିରେ ଦେବା ଦହି ।"
ରାଜାଙ୍କ ମନକୁ ପାଇଲା କଥାଟା
ପାଠୁଆ ହୋଇଲେ ପ୍ରଜା,

ରାଜଦ୍ରୋହ ପାଇଁ ବାଟ ଖୋଲିଦେବ,
ସ୍ୱାଧୀନତା ସ୍ୱାଦୁ ମଜା ।

ରାଜାଙ୍କ ଆଦେଶ ଅନୁମତି ବିନା
ନରଖିବେ କେହି ବହି
ଆଦେଶ ଲଂଘନ ଯେ କରିବ ନିଶ୍ଚେ
ମୃତ୍ୟୁ ଦଣ୍ଡ ଲଭିବଇଁ ।
କାଠରେ ଖୋଦେଇ, ସେ କାଳର ବହି
ଯାହାପାଶେ ଯାହା ଥିଲା,
ଫେରାଇଲେ ପ୍ରଜା ପୋଡ଼ି ଦେଲେ ରାଜା,
ପ୍ରତିବାଦ ଯେ କରିଲା -
ବହି ସାଥେ ଟାଣି ଆଣି,
ଅଗ୍ନିରେ ନିକ୍ଷେପ କରାଗଲା ତାକୁ
କେହି ନ ପାରିଲେ ଜାଣି ।
କାହାକୁ ଜୀବନ୍ତ, ମହା ପ୍ରାଚୀରର
ଗାତରେ ଶୁଆଇ ଦେଲେ,
ପଥର ବସାଇ, ତା'ଉପରେ ଲମ୍ବ
ପାଚେରିକୁ ଗଢିନେଲେ ।
ପାଚେରି ତଳରେ କବି ଦାର୍ଶନିକ
ରଚିଛନ୍ତି ମହାନିଦ୍ରା
କାଳର କବର, ସପ୍ତାଶ୍ଚର୍ଯ୍ୟେ ଗଣା
ମହାକାଳ ମହାପର୍ଦା ।

ତା ୧୦/୧/୨୦୦୯
ଭୁବନେଶ୍ୱର

# ମହର୍ଷି ବୃଷଦେବ

ଦୀର୍ଘ ଅତୀତର କଥା, କହୁଅଛି ଶୁଣ,
ଇକ୍ଷ୍ୱାକୁ ବଂଶର ରାଜା ଅଟନ୍ତି 'ତ୍ର୍ୟରୁଣ',
ମହାଦର୍ପୀ ଥିଲେ ସେହି ରାଜା
ଶାନ୍ତି ସୁଖେ ପାଳୁଥିଲେ ନିର୍ଭୟେ ପରଜା ।

ମହାତପା 'ବୃଷ ଋଷି'ରାଜ ପୁରୋହିତ
ସର୍ବଗୁଣେ ସର୍ବକର୍ମେ ଥିଲେ ସୁସଂହତ,
ରାଜାଙ୍କର ଥିଲେ ଅତି ପ୍ରିୟ
ରାଜସମ୍ମାନରେ ଥିଲେ ଅତି ସମ୍ମାନୀୟ ।

ଦିନେ ରାଜା ବାହାରିଲେ ବନ ଭ୍ରମଣରେ,
ମୃଗୟା ନିଶାରେ ମତ୍ତ ସୈନ୍ୟ ଗହଣରେ,
ବୃଷଦେବ ସାଜିଲେ ସାରଥି
ରାଜ ରଥ ଆଗେଇଲା ଦୃପ୍ତ ତା'ର ଗତି ।

ଗାଁ ଦାଣ୍ଡେ ଖେଳୁଥିଲେ ପିଲାମାନେ ବାଡ଼ି
ତୀର ବେଗେ ରାଜ ରଥ ଆସୁଥିଲା ମାଡ଼ି,
ଭୟେ ସବୁ ପଳାଇଲେ କେଣେ
ରଥଚକ ବାଜି କିନ୍ତୁ ପଡ଼ିଗଲା ଜଣେ ।

ଆଖି ପିଛୁଳାକେ ପିଲା ପ୍ରାଣ ଗଲା ଛାଡ଼ି
ମାତା ପିତା କାନ୍ଦୁଥାନ୍ତି ଆର୍ତ୍ତେ ମୁଣ୍ଡ କୋଡ଼ି,
ରାଜ ପଦେ ଗଡ଼ିଲେ ବିକଳେ
ପୁରୋଧାଙ୍କୁ ରାଜା କ୍ରୋଧେ କେତେ ଧିକ୍କାରିଲେ ।
"ପ୍ରାଣଦଣ୍ଡ ପାଇଁ ଯୋଗ୍ୟ ତୁମେ ମହାପା

ଚାହିଁଛ ନିର୍ଲଜ ସମ ନିରବେ ତଥାପି,
ସାରଥିଦ୍ୱ କରୁଥିଲି ମନା,
ଭାଙ୍ଗିଲିନି ପୁରୋଧାଙ୍କ ଆଗ୍ରହ ଛଳନା ।
ନରହତ୍ୟା ଦୋଷେ ମୃତ୍ୟୁଦଣ୍ଡକୁ ଭୋଗିବ
ଏହା ଅଟେ ରାଜାଦେଶ ଅନ୍ୟଥା ନୋହିବ,
ଧର୍ମର ସେ ନ୍ୟାୟ ନିକିତିରେ
ସରବେ ସମାନ କ୍ରୂର କାନୁନ୍ ଆଖିରେ ।"

ଆଖି ପିଛୁଳାକେ ଋଷି କୋଳେ, ଶିଶୁ ଧରି
ଧ୍ୟାନମଗ୍ନେ ମୃତ୍ୟୁଞ୍ଜୟ ମନ୍ତ୍ରକୁ ଉଚ୍ଚାରି,
ସୋମରସ ଦେଲେ ତା'ପାଟିରେ
ପ୍ରାଣ ସଞ୍ଚାରିତ ହେଲା ତା'ସୁପ୍ତ ଶରୀରେ ।

ସର୍ବାଙ୍ଗେ ସିଞ୍ଚିଲେ ଆଣି କମଣ୍ଡଳୁ ଜଳ
ମନ୍ତ୍ର ସ୍ନାତ ହସ୍ତେ ମୁଖ ଆଉଁଶିଲେ ତା'ର,
କର୍ଣ୍ଣ ପଥ ଦେଲେ ସିଏ ଫୁଙ୍କି
ଚିତ୍କାର କରିଲା ଶିଶୁ ଉଠିଲା ଚିହିଁକି ।

କୋଳୁ ଉଠି ମା' ମା' ଛାଡ଼ିଲା ସେ ଡାକ
ଚାହିଁଲେ ରାଜନ ହୋଇ ସ୍ତବ୍ଧ ହତବାକ,
ଏକ ଲୟେ ଚାଲିଗଲେ ଋଷି
ଜୀବନ୍ତ ଶିଶୁକୁ ଦେଖି ସର୍ବେ ମହାଖୁସି ।

ରାଜପୁରେ ବାହୁଡ଼ିଲେ ରାଜା ବନ ପଥୁ
କାତର କ୍ରନ୍ଦନ ଶୁଭେ, ଶୁଣିଲେ ସେ ରଥୁ,
ଘଟିଅଛି କିବା ଅଘଟନ !
ଦେଖିଲେ ସରବେ ଦୁଃଖେ ଅତି ମ୍ରିୟମାଣ ।

ଜଳୁଅଛି ଅଗ୍ନି, ନାହିଁ ଉତ୍ତାପ ତାହାର
ପ୍ରସ୍ତୁତ ପାରୁନି ହୋଇ, କା' ପାଇଁ ଆହାର,
କ୍ଷୁଧା, ସର୍ବେ କରିଅଛି ଗ୍ରାସ
ବିବଶ କରିଛି ପ୍ରାଣ ଅନାହାର ତ୍ରାସ ।

ଅସ୍ଥିର ହୋଇଲେ ରାଜା କି କରିବେ ବୋଲି
ବୁଦ୍ଧିବାଟ ନ ଦିଶିଲା ସବୁ ଗଲେ ଭୁଲି,
ବିନୀତେ କହିଲେ ମନ୍ତ୍ରୀ, ଶୁଣନ୍ତୁ ରାଜନ !
ପୁରୋଧା ପାରିବେ କରି ଏହା ସମାଧାନ ।
ଏ ସଙ୍କଟେ ମିଳିଲେ ଆଦେଶ,
ପାଛୋଟି ଆଣିବି ତାଙ୍କୁ ଏ ପୁରେ ନରେଶ !
ଅଭିମାନ ସବୁ ଯିବ ତୁଟି,
ସଙ୍କଟ ହୋଇବ ଦୂର ରିଷ୍ଟ ଯିବ କଟି ।

"ମୃତ୍ୟୁ ଅପରାଧେ, ଦଣ୍ଡ କଲି ମୁଁ ଘୋଷଣା
କରିନାହିଁ କାନୁନ୍‌ର ମୁଁ ଅବମାନନା,
ନ୍ୟାୟ ଦାନେ ସରବେ ସମାନ
ଏଥିରେ ପୁରୋଧା କିମ୍ପା କଲେ ଅଭିମାନ ?"

ପ୍ରବେଶିଲେ ରାଜା ଯାଇ ପୁରୋଧା ସଦନେ
ସସମ୍ମାନେ ସମ୍ବୋଧିଲେ ଭବ୍ୟ ସମ୍ଭାଷଣେ,
ପୁଛିଲେ, "କିମ୍ପାଇ ଅଗ୍ନି କରିଛନ୍ତି ରୋଷ ?
ଉତ୍ତାପ ମିଳୁନି ଅଗ୍ନି ହେଲେ ବି ପ୍ରକାଶ-
ରାଜପୁରେ ସର୍ବେ ଅନାହାରେ,
ଉତ୍ପୀଡ଼ିତ ସର୍ବଗ୍ରାସୀ ରାକ୍ଷସି କ୍ଷୁଧାରେ ।"

ମହାକାରୁଣିକ ଋଷି ପ୍ରାଣ ତରଳିଲା
ଅଭିମାନ ଅପମାନ ମନୁ ଦୂରହେଲା,
ବସିଗଲେ ଧ୍ୟାନ ବଶେ ଯୋଗ ମୁଦ୍ରା ତୋଳି
ଧୀରେ ଧୀରେ ତପ୍ତ ଅଗ୍ନି ଉଠିଲା ଉଜ୍ଜଳି ।
ଧ୍ୟାନ ଭଙ୍ଗ ହେଲା କ୍ଷଣ ପରେ,
ଉଚ୍ଛୁଳି ଉଠିଲେ ସର୍ବେ ଜୟ ଜୟକାରେ ।
ଟାଳି ଦେଲେ ଅଗ୍ନିଙ୍କର କୋପ,
ମହର୍ଷିବୃଷଭ ଦେବ ମହାନ୍ ଯାଜ୍ଞିକ ।

୨୩/୦୧/୨୦୦୯
ଅନଗୁଳ

# ଅଭିଶପ୍ତ ଧର୍ମରାଜ

ଅଦ୍ଭୁତ ଘଟଣା ଏକ,
ଦ୍ୱାପର ଯୁଗରେ ଘଟିଥିଲା ଏହା-
କାଳଜୟୀ ସ୍ମୃତିଲେଖ ।
ଥରେ ଦଳେ ଚୋର କରିଲେ ବିଚାର
ରାଜାଙ୍କ ଭଣ୍ଡାରଘରେ
କରିବେ ଲୁଣ୍ଠନ, ରାଜା ସୈନ୍ୟ ଗଣ
କେ ନାହାନ୍ତି ରାଜପୁରେ ।
ବେଳ କାଳ ଉଣ୍ଡି ପଶିଲେ ଉଆସେ
ନିଦ୍ରିତ ପ୍ରହରୀ ଗଣ,
ଧନରତ୍ନ ରାଜି ଲୁଟିନେଲେ କେତେ
ଯାହା ସବୁ ମୂଲ୍ୟବାନ ।
ସତର୍କେ ବାହାରି ଆସି-
ଅନ୍ଧାର ବୁକୁରେ ମିଶିଗଲେ କ୍ଷଣେ
ଅନାୟାସେ ଗଲେ ଖସି ।

ଧରି ବୋଝ ଭାରି ଖଣ୍ଡେ ବାଟ ଚାଲି
କ୍ଲାନ୍ତ ହୋଇଗଲେ ପଥେ,
ଏଥିରୁ ସେ କିଛି ଲୁଚାଇବେ କାହିଁ
କମାଇବେ ଭାରା ଏତେ ।
ଅଦୂରେ ଦେଖିଲେ ଆଶ୍ରମଟିଏ,
ଧ୍ୟାନେ ବସିଛନ୍ତି ମୁନି
ଲୁଚାଇ ରଖିଲେ ଜିନିଷରୁ କିଛି
ପଶିଯାଇ ତୁନି ତୁନି ।
ପାଦ ଚିପି ଚିପି ଧୀରେ

ବାହାରି ଆସିଲେ ଆଶ୍ରମ ଭିତରୁ
ଅନ୍ଧକାର ରାସ୍ତା ପରେ ।
ଭୟେ ଥର ଥର, ଚାଲି ଟରଟର,
ଲାଘବ ହୋଇଛି ଭାରା
ରାଜଉଆସରେ ପ୍ରହରୀଏ ଉଠି
ଗୋଡ଼ାଇ ଅଛନ୍ତି ପରା ।
'ଚୋର' 'ଚୋର' ଡାକ ଶୁଭିଛି ଦୂରରୁ
ଧର ଧର ମାର ମାର
ଧରା ପଡ଼ିଗଲେ ହେବ ଶିର କାଟ
ଚୋର ଦଳ ଭୟାତୁର ।
ଉଆସ ପ୍ରହରୀ ଗଣ,
ଆଶ୍ରମରେ ଧସି ପଶିଗଲେ ଆସି
ଖୋଜି ଖୋଜି ଅନୁକୋଣ ।
ଚୋରି ଜିନିଷରୁ ମିଳିଗଲା କିଛି
ଭାବିଲେ ଏ ମୁନି ଚୋର
ହୁନ୍ଦର କରୁଛି ମୁନିବେଶ ସାଜି
ପ୍ରହାରିଲେ ବାର ବାର ।
ଅସଲି ନୁହେଁ ଏ ନକଲି ବାବାଜି
ଏ' ତପ, ଛଳନା ଖାଲି
ଚାବୁକ ପାହାର ବାଜିଲାଣି ଏତେ
କହୁନି ତ ମଲି ମଲି !
କଥା ତ ମିଳୁନି କିଛି,
ଆଉ ଯେତେ ସବୁ ଚୋରି ମାଲ ଆଣି
କେଉଁଠାରେ ଲୁଚାଇଛି ।
ରାଜାଙ୍କ ଆଦେଶେ ମାଣ୍ଡବ୍ୟ ମୁନିଙ୍କୁ
ବସାଇଲେ ଶୂଳି ପରେ

ରାଜାଦେଶ ଯାହା, ହୋଇଛି ପାଳିତ,
ଜଣାଇଲେ ଶ୍ରୀଛାମୁରେ ।
ବହୁ ଦିନ ପରେ ଗୁପ୍ତଚର ଆସି
ଗୁପତେ କହିଲା ପ୍ରଭୁ ।
ବଞ୍ଚିଛନ୍ତି ମୁନି, ଶୂଳ ପରେ ବସି
ସତେଜ ଇନ୍ଦ୍ରିୟ ସବୁ ।
ନଅରୁ ରାଜନ ହୋଇଲେ ବାହାର
ସହସା ଆଶ୍ରମ ପଥେ,
କିସ ଅଘଟଣ ଘଟିବ ରାଇଜେ
ଚିନ୍ତିତ ହୃଦଗତେ ।
ଚୋର ପଳାଇଛି ଜିନିଷ ପକାଇ
ଆଶ୍ରମେ ମୁନିବର ।
ରାଜକର୍ମଚାରି ପାରିଲେନି ଜାଣି
ଦଣ୍ଡିଲେ ମୁନିବର ।
ଆଶ୍ରମ ପ୍ରାଙ୍ଗଣେ ଶୂଳି ଆରୋହଣେ
ତପୋବଳେ ପ୍ରାଣବନ୍ତ
ବସିଛନ୍ତି ମୁନି ନାହିଁ ମନେ ଗ୍ଳାନି
ଉଦାର ଗମ୍ଭୀର ଶାନ୍ତ ।

"ଦିଅ ପ୍ରଭୁ କ୍ଷମା,କହିଲେ ରାଜନ
ମୋର ଏ ଦୁଷ୍କୃତି ପାଇଁ
ମହା ଅପରାଧ କହିଲେ ରାଜନ
ଜାଣେ ଏଥୁ କ୍ଷମା ନାହିଁ ।
ବାହାରି ଆସନ୍ତୁ ଶୂଳିପରୁ ପ୍ରଭୁ ।
ଏତିକି ମିନତି ମୋର
ଯେଉଁ ଦଣ୍ଡ ଦେବେ ପାଳିବି ତେଣିକି
ହେଉବା ଯେତେ କଠୋର ।
ନ କରିବି ଅଭିମାନ,
'ଯେ ପାପ କରିବ, ସେ ଦଣ୍ଡ ପାଇବ'
ବୁଝାଇ ନେବି ମୋ ମନ ।"

କରୁଣା କୋମଳ ମୁନିଙ୍କର ମନ
ତରଳିଲା ଯଥା ହବି
ଶୂଳିରୁ ବାହାର ହେବା ପାଇଁ ଚେଷ୍ଟା
କରିଯାଇଥିଲେ ତବି ।
ବିଫଳ ହୋଇଲେ ଶେଷେ-
କାଟି ଦିଆଗଲା ଶୂଳିଟି ବାହାରୁ
ଅବଶେଷେ ରାଜାଦେଶେ ।
ମୁନିଙ୍କର ଗୁଦ ଗର୍ଭେ ରହିଗଲା
ଶୂଳାଗ୍ର, ଯା'ଅଟେ 'ଅଣି'
ସେ "ଅଣିମାଣ୍ଡବ୍ୟ" ଋଷିନାମେ ତହୁଁ
ପରିଚିତ ହେଲେ ପୁଣି,
ସହସା ସେଠାରୁ ହୋଇଲେ ବାହାର
ତୀର୍ଥାଟନ ପଥେ ଏବେ
ରାଜ ଅପରାଧ ଭୋଗିଥିଲେ ମଧ୍ୟ
ରୁଷ୍ଟ ନ ହୋଇଲେ ଲବେ ।
କିଛିଦିନ ଗଲା ବିତି,
ଇହ ଧାମ ତେଜି ଲଭିଲେ ସେ ଦିବ୍ୟଗତି ।

ଧର୍ମରାଜ ପୁରେ ଉପଗତ ହେଲେ
ମାଣ୍ଡବ୍ୟ ମହାମୁନି,
ସିଂହାସନେ ବିଜେ ଥିଲେ ଯମରାଜ
ହାତରେ ନିକିତି ଘେନି ।
ମଧୁରେ ମାଣ୍ଡବ୍ୟ ପଚାରିଲେ ତାଙ୍କୁ,
"କି ଦୋଷେ ଦଣ୍ଡିଲେ ଏତେ ?

ତପୋମୟ ଅଟେ ମୋ ଜୀବନସାରା
କି ପାପ ଗ୍ରାସିଲା ମୋତେ ?
ସନ୍ଦେହ ମୋଚନ କରି-
ଯେଉଁ ଦଣ୍ଡ ଦେବେ ଦିଅନ୍ତୁ ଆନନ୍ଦେ
ନେବି ମୁହିଁ ତାହା ବରି ।”

ଯମରାଜ ତହୁଁ ସହାସ୍ୟେ କହିଲେ,
‘ଥିଲେ ଯେବେ ଋଷି ଶିଶୁ,
ସାଙ୍ଗସାଥୀ ମେଳେ ଖେଳୁଥିଲେ ଭୋଳେ
କୌତୂହଳପରବଶୁ ।
କଙ୍କିମାନେ ମୁଦେ ଉଡୁଥିଲେ ତହିଁ
ଶୀତଳ ପବନ ପାଇ

ପିଲାଏ ଗୋଡ଼ାନ୍ତି, ଧରା ନ ଦିଅନ୍ତି
ଉପରକୁ ଉଠି ଯାଇ ।
ଚପଳ ତାପସ କୁମାର ଅଟନ୍ତି
କଙ୍କି ଧରିବାରେ ସିଦ୍ଧ
ଧରି ନେଇ ଏକ କୁନି କଙ୍କିଟିକୁ
କଲେ ସେ କଣ୍ଟକ ବିଦ୍ଧ ।
ଏ ଦୋଷେ ଦଣ୍ଡିତ ହେଲେ,
ଯାହା ଭୋଗିବାକୁ ରହିଛି କପାଳେ
‘ଆନ, କେ କରିବ ଭଲେ ?

"କାକୁଡ଼ି ଚୋରକୁ ମୁଣ୍ଡକାଟ ଶାସ୍ତି
ହାତରେ ନିକିତି ଧରି
ଧର୍ମଦ୍ରୋହ କଲେ ଧର୍ମରାଜ ହୋଇ,
ଅଭିଶାପ ନିଅ ବରି ।
ମର୍ତ୍ତେ ଜନ୍ମ ନିଅ, ମର ନର କୂଳେ
ବିଧି ତୁମ ଭାଗ୍ୟ ବାମ
ପୁରୁବଂଶେ ଜାତ ହୋଇଲେ ସେ ଯାଇ
ଧାର୍ମିକ 'ବିଦୁର' ନାମ ।
ମହାଭାରତର ହେଲେ ସେ ମଉଡ଼ମଣି,
ମର୍ତ୍ତ୍ୟ ମଣ୍ଡଳର ଧର୍ମରାଜ ରୂପେ
ରହିଛନ୍ତି ନାମ ଘେନି ।"

୨୭/୦୧/୨୦୦୯
ଭୁବନେଶ୍ୱର

# ମହାପଦ୍ମନନ୍ଦ

ଯିଶୁଖ୍ରୀଷ୍ଟ ଜନ୍ମ ପୂର୍ବ କଥା
ମଗଧ ଦେଶରେ ଥିଲେ
ନାଗବଂଶ ଶାସନ କରତା ।
"କାଳାଶୋକ" ନାମେ ତହିଁ ଥିଲେ ଜଣେ ରାଜା
ସର୍ବ ଗୁଣାଧାର ସିଏ,
ମହା ସୁଖେ ପାଳୁଥିଲେ ପ୍ରଜା ।
ଦାନ ଧର୍ମ ଆଚରି ସେ
ମହା ସୁଖେ କାଟୁଥିଲେ କାଳ,
ହତାଶେ ନ ଫେରେ କିଏ, ନ ପୂରାଇ ଯାଚନାରଥାଳ ।

ମହାରାଣୀ 'ଶୁଭଲକ୍ଷ୍ମୀ' ସୌନ୍ଦର୍ଯ୍ୟର ପାରିଜାତଟିଏ
ସେ ନୃତ୍ୟ ନିପୁଣା ପୁଣି ସଙ୍ଗୀତର 'ସୁରଧୁନୀ' ସିଏ ।
ନିତି ବସି ବାତାୟନ ପଥେ,
ପ୍ରାଣର ପୂରବୀ ସିଏ ତୋଳୁଥାନ୍ତି ବୀଣା ଧରି ହାତେ ।

ଉଦ୍ୟାନ ଭ୍ରମଣେ ରାଣୀ, ରାଜାଙ୍କର ନିତି ଦିନ ସାଥୀ
ଜ୍ୟୋସ୍ନାମୟୀ ରଜନୀରେ
ସୁଲୁ ସୁଲୁ ପବନରେ
ପୁଷ୍ପ ମଧୁ ମହକରେ,
ତୋଳନ୍ତି ସେ ପ୍ରାଣସ୍ପର୍ଶୀ ସ୍ୱପ୍ନମୟ ଚିତ୍ତ ଚୋରାଗୀତି ।
ମାଦକିତ କରନ୍ତି ରାଜାଙ୍କୁ,
କୁଞ୍ଜକୋଳେ ଲୁଚିଯାନ୍ତି ସ୍ୱପ୍ନ ଭୂମେ ଛାଡ଼ି ଦେଇ ତାଙ୍କୁ ।

ଉପଭୋଗ କରନ୍ତି ସେ ପୁଷ୍ପମୟୀ ଉଦ୍ୟାନ ପ୍ରକୃତି
ପୁଷ୍ପରୁ ପୁଷ୍ପକୁ ଦୁହେଁ ଆନନ୍ଦରେ ଘୂରି ବୁଲୁଥାନ୍ତି ।
ଦେଖନ୍ତି ସେ ବିହଙ୍ଗ ବିହାର,
ଚଞ୍ଚୁ ଚୁମ୍ବନରେ ମତ୍ତ ପକ୍ଷୀ ଦଳ ଦଳ ।
ପଚାରନ୍ତି କି ଦେଖୁଛ ରାଣୀ ?
ଲାଜରେ ସରମି ଯାଇ ଧରନ୍ତି ସେ ବୀଣାଟିକୁ ଟାଣି ।
ରାଜଦାଣ୍ଡେ ବୁଲୁଥିଲା ଦିନେ ଏକ ସୁଠାମ ଯୁବକ
ଦିଶୁଥିଲା ସୌମ୍ୟଶାନ୍ତ ରୂପ ସିଗ୍ଧ ସତେ ବା କନ୍ଦର୍ପ,
କର୍ମହୀନ ଯୁବକ ଜଣକ -
ଖୋଜୁଥିଲା ରାହା,
ବୁଲୁଥିଲା ବାସହରା, ପାଇବାକୁ ତା' ଜୀବନେ ସାହା ।

ବୁଲି ବୁଲି ପହଞ୍ଚିଲା ରାଜାଙ୍କର ଉଆସରେ ଯାଇ
କେତେ ଆଶା ଥିଲା ତାର ଦିନେ ରାଜଅନୁଗ୍ରହ ପାଇଁ
ବଦଳିବ ଜୀବନର ଗତି,
ଦୂର ହେବ ଦୁଃଖ ତା'ପ; ସିଏ ତାର ଅଗତିର ଗତି ।

ବାତାୟନ ପଥେ ରାଣୀ ବସିଥିଲେ ବୀଣାଟିକୁ ଧରି
ଉଆସ ପ୍ରବେଶ ପଥେ ଉଭା ହେଲା ସେଇ ପଥଚାରୀ,
କହିଲା ସେ ଭେଟିବ ରାଜାଙ୍କୁ
ଛାଡ଼ିବାକୁ ମନାକରି ପ୍ରହରିଏ ବେଢିଗଲେ ତାଙ୍କୁ ।

ଅନୁମତି ମିଳିଗଲା, ଗଲା ସେ ରାଜ ଦରଶନେ
ବସିଥିଲେ ରାଜାରାଣୀ ସ୍ୱର୍ଣ୍ଣମୟ ରାଜସିଂହାସନେ ।
ମଥାନତେ ହେଲା ଛିଡ଼ା, ବ୍ୟଥାହତ ତଥାପି ନିର୍ଭୀକ,
ଦିଶୁଥିଲା ସତେଅବା ପଥପ୍ରାନ୍ତ ପୁଷ୍ପିତକିଂଶୁକ ।

ଚାହିଁ ଥିଲେ ରାଣୀ ଏକ ଲୟେ,
"ଅବହିତ କର ମୋତେ ହେ ଯୁବକ ପୂର୍ଣ୍ଣ ପରିଚୟେ ।"
କହିଲେ ରାଜନ,
କରୁଣା କୋମଳ ଅଟେ ଦୟାଶୀଳ ରାଜାଙ୍କର ମନ ।

"ମଣିମା ! ଜନମ ମୋର ପଲ୍ଲୀ ଗ୍ରାମେ 'ନାପିତ' କୁଳରେ
ମାତା ପିତା ଛେଉଣ୍ଡ ମୁଁ, ଅସହାୟ ବାଲ୍ୟ ବେଳରେ,
କାହାଠାରୁ ବଡ଼ବେଳେ କୁଳକର୍ମ ନ ପାରିଲି ଶିଖି
ନାପିତ ହୋଇବି ମୁହିଁ, ଜାଣେ ନାହିଁ କ୍ଷୁରକୁ ପରଖି ।
କଷ୍ଟ ମଷ୍ଟେ ବଞ୍ଚିଅଛି, ଯାହା କିଛି କରି କାମ ଧାମ
ତାହା ମଧ୍ୟ ମିଳୁନାହିଁ ସବୁବେଳେ କରିବାକୁ କାମ ।
ଓଳିତଳ ଲେଉଟିଆ ପରି,
ବଢୁଅଛି ଅଯତ୍ନରେ ଅନାହାରେ କର୍ମକୁ ଆଦରି ।
ନୟନୁ ଗଡ଼ିଲା ଲୁହ ଧାରଧାର,ନ ଥମିଲା କୋହ
କହିଲା, "ଆସିଛି ପ୍ରଭୁ । ପାଇବାକୁ ରାଜଅନୁଗ୍ରହ ।
ରକ୍ଷା ମୋତେ କରନ୍ତୁ ରାଜନ,
ବିପଦ ସାଗରୁ ମୋତେ ଏ ବେଳରେ କରି ପରିତ୍ରାଣ ।"

ନିଯୁକ୍ତ କରିଲେ ରାଜା, ଦୟାଶୀଳା ରାଣୀଙ୍କ ମତରେ
ସେବାକାରୀ ରୂପେ ତାକୁ ରଖାଗଲା ରାଜଉଆସରେ ।
ସେବାବଳେ ରାଜମନ କରି ନେଲା ଜୟ,
ରାଜା ରାଣୀଙ୍କର ସିଏ ଅଳ୍ପଦିନେ ହୋଇଗଲା ପ୍ରିୟ ।
ରାଜ ଅନୁଗ୍ରହ ପାଇ ଭାଗ୍ୟ ତା'ର ହୋଇଲା ଉଦିତ
ଶାସନ କଳରେ ସିଏ ହୋଇଗଲା ଦିନେ ଅଧିଷ୍ଠିତ,
ରାଣୀ ତା'ର ରୂପମୁଗ୍ଧ, ସେ ରାଣୀଙ୍କ ରୂପର ପତଙ୍ଗ
ଆକର୍ଷିତ ହେଲେ ବେନି, ବଦଳିଲା ହୃଦୟର ରଙ୍ଗ ।

ରହିଲାନି କୁଳ ଶୀଳ, ରହିଲାନି ଆଚାର ବିଚାର
ଜଳିଲା କାମନା ବହ୍ନି, ଲାଳସାରେ ରକ୍ତିମ ପ୍ରଖର,
ମାନସିକ ସନ୍ତୁଳନ ହରାଇଲେ ସେ ବେନି ପ୍ରମତ୍ତ
ଭୋଗିବେ ଚରମ ଦଣ୍ଡ, ରାଜା କ୍ରୋଧେ ହେଲେ ଜର୍ଜରିତ ।

ରାଜନ ଦଣ୍ଡିବା ଭୟେ, ଦୁହେଁ ତାଙ୍କୁ କରିଦେଲେ ହତ୍ୟା
ସିଂହାସନେ ବସାଇଲେ ରାଣୀ ତାଙ୍କୁ ପ୍ରଚାରି ବାରତା,
"ମହାପଦ୍ମନନ୍ଦ" ନାମ ବହି ସିଏ ହେଲେ ଅଭିଷେକ
ଆରମ୍ଭ ହୋଇଲା ତହୁଁ 'ନନ୍ଦବଂଶ' ବୋହି ସେ କଳଙ୍କ ।
ବିଶ୍ୱାସଘାତକ ଦୁହେଁ ମଗଧକୁ କରିଲେ ଶାସନ
ଇତିହାସ କରୁଅଛି ରୁଦ୍ଧକଣ୍ଠେ ସେ କଳଙ୍କ ଗାନ ।

୩୧/୦୧/୨୦୦୯
ଭୁବନେଶ୍ୱର

# ଉତ୍କଳ ଦିବସର ଅନୁଚିନ୍ତା

ଉତ୍କଳ ପ୍ରଦେଶ ଯେବେ
ଜନ୍ମ ନେଲା ଭାରତ ଭୂମିରେ,
ଭାରତର ଭୌଗୋଳିକ ମାନଚିତ୍ର ପରେ,
ନୁହଇ ତା' ସଦ୍ୟତମ ନବୀନ ଉନ୍ମେଷ-
ଉତ୍କଳର ପରିଚୟ କାଳୋତୀର୍ଣ୍ଣ ଅଟେ ତା'ର ଯଶ ।

ବିଶ୍ୱ ମାନସେ ଅଲିଭା, ଉତ୍କଳ ସଂସ୍କୃତି
ସୁଦୀର୍ଘ ଅତୀତ ବୁକେ ଅଲିଭା ତା' ସ୍ମୃତି,
ପୁରୁଷୋତ୍ତମ, ଯଯାତି, କପିଳେନ୍ଦ୍ର ଦେବ
କେତେ କୀର୍ତ୍ତି ଥାପିଥିଲେ କଳା ଅଭିନବ ।
କୋଣାର୍କ ମନ୍ଦିର,
କଳା ଆଉ ଭାସ୍କର୍ଯ୍ୟର ବିଶ୍ୱଗନ୍ତାଘର ।

ଏ ଉତ୍କଳ କଳାମୟୀ ମନ୍ଦିରମାଳିନୀ
ବିଶ୍ୱମାନସରେ ବିଜେ କଳା କୀର୍ତ୍ତି ଘେନି,
ନିହଣ ମୁନରେ ତା'ର ଦକ୍ଷ ଶିଳ୍ପୀକୁଳ
ନିଷ୍ପ୍ରାଣ ପାଷାଣେ ପ୍ରାଣ କରନ୍ତି ସଂଚାର ।

ଶିଳା ନର୍ତ୍ତକୀ ଜ୍ୟୋସ୍ନିତ ରାକା ରଜନୀରେ
ଦୋଳନ୍ତି ନୃତ୍ୟ ଆସର ନିର୍ଜନ ରାତିରେ,
ଦେବତା ଗନ୍ଧର୍ବ ଆଉ କିନ୍ନର କିନ୍ନରୀ
ଆସିଥାନ୍ତି ମର୍ତ୍ତ୍ୟ ମଞ୍ଚେ ସ୍ୱର୍ଗ ସୁଖ ଭୁଲି ।

ଶିଳାଙ୍ଗନା କରିଦିଏ ସ୍ୱପ୍ନାୟିତ ମନ
ମାଦକିତ ସେ ସଙ୍ଗୀତ ମୁଗ୍ଧ ନୃତ୍ୟଘନ -
ଘନାୟିତ ଦୀର୍ଘ ଅତୀତରୁ,
ସମୟର ଦୂର ଚକ୍ରବାଳୁ ।

ଦିନ ଥିଲା ଏ ଉତ୍କଳ ଗଙ୍ଗାଠାରୁ ଗୋଦାବରୀ ଯାଏ
ବିସ୍ତାରିତ ହୋଇଥିଲା ମାନଚିତ୍ରେ ବିପୁଳିତ କାୟେ,
ତା' ସଭ୍ୟତା ପ୍ରଖରିତ ହୋଇଥିଲା ଦେଶ ବିଦେଶରେ
ବିଦେଶୁ ଶାସକ ଆସି ସଙ୍କୁଚିତ କରିଦେଲା ତା'ରେ ।
ସ୍ୱାଧୀନ ଉତ୍କଳ,
ଲଢ଼ି ଲଢ଼ି ଗଢ଼ା ହେଲା, ହରାଇ ସକଳ ।

ଓଡ଼ିଆ ସାଧବ ପୁଅ ସାଗର ବୁକୁରେ
ବାହୁଥିଲା ଯାତ୍ରା ତା'ର ଦ୍ୱୀପ ଦ୍ୱୀପାନ୍ତରେ ।
କରୁଥିଲା  ବଣିଜ ବେପାର,
ବାଣ୍ଟି ଦେଉଥିଲା ତା'ର ସଂସ୍କୃତିର  ଚେତନା ସମ୍ଭାର ।

କର୍ପୂର ଯାଇଛି ଉଡ଼ି କନା ଅଛି ପଡ଼ି
ଯାଉନି ସାଧବ ବୋଇତରେ ପାଲ ଭିଡ଼ି ।
ଆଜିବି ରହିଛି ତହିଁ ସ୍ମୃତିର ଝଲକ,
ସତେବା ଓଡ଼ିଆ ଭୂମି ଅଟେ ସେ ମୂଳକ ।
ନାମ ଧାମ ରଖିଛନ୍ତି ଧରି,
ଓଡ଼ିଆର ପରମ୍ପରା ରହିଛି ସେପାରି ।

ତା' କୋଲୁ ଜନମି ବୁଦ୍ଧ, ବିଶ୍ୱେ ଦେଲେ ଅହିଂସା ବାରତା
ବିଷ୍ଣୁଶର୍ମା ଗପ ଛଳେ ଶିଖାଇଲେ କେତେ ହିତ କଥା,
ମହାକାଶ ତତ୍ତ୍ୱ ଦେଲେ ଜ୍ୟୋତିର୍ବିଦ ପଠାଣି ସାମନ୍ତ
ସାରସ୍ୱତ କୀର୍ତ୍ତି ଗାଥା, ସାରଳାଙ୍କ ସେ ମହାଭାରତ ।
ଜୟଦେବ, ଜଗନ୍ନାଥ ଦାସ,
ଏ ଜାତିର ପ୍ରତିପ୍ରାଣେ କରିଛନ୍ତି ବାସ ।
ସଂସ୍କୃତିକ ପରିଚୟ ସ୍ୱତନ୍ତ୍ର ଏ ଓଡ଼ିଆ ଜାତିର
ଏହା ମଧ୍ୟ ଗର୍ବ ଅଟେ ନବ ଉତ୍କଳର ।
ପ୍ରଣମେ ଭକ୍ତିରେ,
ଉତ୍କଳ ଦିବସେ ଆଜି, ଶୁଭମୟ ଏ ପୁଣ୍ୟ ତିଥିରେ ।

ତା ୧/୪/୨୦୦୯
ଭୁବନେଶ୍ୱର

# ଋଷି ଭାର ବୋହିଲେ

ବ୍ରହ୍ମହତ୍ୟା ଦୋଷେ ଜର୍ଜରିତ ଇନ୍ଦ୍ର
ବୃତ୍ରାସୁର କରି ବଧ
ବ୍ରହ୍ମହତ୍ୟା ପାପ, ଧରି ଉଗ୍ରରୂପ
ଗୋଡ଼ାଇଲା ହୋଇ କ୍ରୁଦ୍ଧ ।
ସ୍ୱର୍ଗପତି ଭୟେ ଇନ୍ଦ୍ରପୁରୀ ତେଜି
କଲେ ତହୁଁ ପଳାୟନ,
ଖୋଜି ବୁଲୁଥିଲେ ନିରାପଦ ଥାନ
ଭ୍ରମି ଭ୍ରମି ତ୍ରିଭୁବନ ।
କୈଳାସ ଶିଖରେ ମାନସସରଃରେ
ପହଞ୍ଚିଲେ ଯାଇ ଶେଷେ,
ଲକ୍ଷ୍ମୀ ଠାକୁରାଣୀ ରକ୍ତ ପଦ୍ମ ଫୁଲେ
ବସିଛନ୍ତି ଶୁଭ୍ର ବେଶେ ।
ସେ ଫୁଲର ନାଡ଼େ ସୂକ୍ଷ୍ମ ଶରୀରରେ
ପ୍ରବେଶିଲେ ଦେବରାଜ,
ଗ୍ରାସି ପାରିଲାନି ତାଙ୍କୁ ମହାପାପ
ବାହୁଡ଼ିଲା ପାଇ ଲାଜ ।
ବହୁଦିନ ଧରି ଆତ୍ମଗୋପନରେ
ରହିଗଲେ ସ୍ୱର୍ଗପତି,
ବିକଳ ମଥିତା ଇନ୍ଦ୍ରପତ୍ନୀ ସଚୀ
ଅସହାୟା ମନେ ଅତି ।

ଇନ୍ଦ୍ରଙ୍କ ପଦରେ ଇନ୍ଦ୍ର ରୂପେ ଜଣେ-
କରିବାକୁ ଅଭିଷେକ,
ଖୋଜା ପଡୁଥିଲା ତିନି ଭୁବନରେ
ମହାପୁଣ୍ୟ ଜନ ଏକ ।
ଚନ୍ଦ୍ର ବଂଶ ନୃପ ଅଟନ୍ତି 'ନହୁଷ'
ଦୀପ୍ତିଶୀଳ ପୁଣ୍ୟବଳେ
ଦେବ ଋଷି ଗଣ ଇନ୍ଦ୍ରପଦ ତାଙ୍କୁ
ଯାଚିଥିଲେ ଶ୍ରଦ୍ଧା ଭରେ ।
ସେ କହିଲେ, "ମୁହିଁ ଛାଡ଼ି ମର୍ତ୍ତ୍ୟ ଭୂଇଁ
ଏ ପ୍ରିୟ ପୃଥିବୀ ମୋର,
ଇନ୍ଦ୍ର ପଦ ଲୋଭେ ସ୍ୱର୍ଗେ ଯିବା ପାଇଁ
ନୁହେଁ ମୁଁ ଲାଳସାତୁର ।
ନାହିଁ ମୋ' ପାଶରେ ଏତେ ପୁଣ୍ୟବଳ
ଅଧ୍ୟାତ୍ମ୍ୟ ବିଭୂତି ରାଶି,
ନାହିଁ ତପୋଧନ ଇନ୍ଦ୍ରଙ୍କ ସମାନ,
ଇନ୍ଦ୍ରପଦ ଅଭିଳାଷୀ-
କିପରି ପାରିବି ହୋଇ ?
ଦେବ ଋଷିଗଣ କଲେ ପୁଣ୍ୟଦାନ
ଏଦୋଷ ରହିବ ନାହିଁ ।"

ଦେବତା କହିଲେ, "ଆମେ ତେବେ ପୁଣ୍ୟ
ଅରପୁଛୁ ମନ ଭରି,
ଏ ଦାନେ ନରେଶ ହେବେ ଦେବରାଜ
ଇନ୍ଦ୍ରାସନ ଲାଭ କରି ।

ନହୁଷ ନରେଶ ଲଭି ଇନ୍ଦ୍ରପଦ
ଦେବେନ୍ଦ୍ର ହୋଇଲେ ସ୍ୱର୍ଗେ,
ଭୋଗ ଭୂମି ଭୋଗ ମଦିରାରେ ମତ୍ତ
କ୍ଷମତା ପ୍ରଭୁତା ଗର୍ବେ ।
ସର୍ବ ସୌନ୍ଦର୍ଯ୍ୟର ସର୍ବ ବିଭୂତିର
ଆଧାର ଇନ୍ଦ୍ରାଣୀ ସଚୀ
ତାଙ୍କ ରୂପ ସୁଧା ପାନ କରିବାକୁ
ବଳି ଅଛି ତାଙ୍କ ମତି ।
ଶ୍ରଦ୍ଧା ନିମନ୍ତ୍ରଣ ପଠାଇଲେ ତାଙ୍କୁ
ବରିବାକୁ ରାଣୀ ପଦେ,
କହିଲେ; ମୁଁ ଇନ୍ଦ୍ର ତୁମେ ମୋ ଇନ୍ଦ୍ରାଣୀ-
ସଚୀରାଣୀ, ମୋର ହୃଦେ -
ଲଭିଅଛ ପୁଣ୍ୟ ଥାନ,
ତୁମ ବିନା ମୁହିଁ ଲୋଡ଼େ ନାହିଁ ନାରୀ ଆନ ।

ଏ ସମ୍ବାଦ ଶୁଣି ହେଲେ ମର୍ମାହତ
ସଚୀ ଦେବୀ ବିଚଳିତ,
କହିଲେ ହେ ଇନ୍ଦ୍ର ! ରଖି ପାରିବିନି-
ଅନୁରୋଧ ଅନୁଚିତ ।
କରିପାରିବିନି ମୁଁ ଧର୍ମ ଲଂଘନ
ଅପରାଧ ଘୃଣ୍ୟ ଘୋର,
ତୁମ ପାଟରାଣୀ ତୁମର ଇନ୍ଦ୍ରାଣୀ
ପତି ଧର୍ମ ରକ୍ଷାକର ।
ପର ନାରୀ ଲୋଭ ତେଜି,
ମହିମା ମଣ୍ଡିତ ପୁଣ୍ୟ ଇନ୍ଦ୍ରପଦ,
ରଖ ତା' ମର୍ଯ୍ୟାଦାରାଜି ।

ଇନ୍ଦ୍ରଦେବ ଶୁଣି ଗର୍ଜି ଉଠିଲେ
କରିବେ ପ୍ରୟୋଗ ଶକ୍ତି
ଶରଣ ପଶିଲେ ସଚୀ ଦେବୀ ଯାଇ
ଦେବ ଗୁରୁ ବୃହସ୍ପତି ।
ଆଶ୍ୱାସି କହିଲେ, ଅହଂକାର ତାଙ୍କ
ଅବିଳମ୍ବେ ହେବ ଚୂର୍ଣ୍ଣ
ସର୍ତ୍ତାରୋପ କରି ଜଣାନ୍ତୁ ସମ୍ମତି
ଅଭିନୟ ହେବ ପୂର୍ଣ୍ଣ ।
କହିବେ, "ହେ ଇନ୍ଦ୍ର ! କ୍ରୋଧ ପରିହର,
ଗୋଟିଏ ସର୍ତ୍ତରେ ମୁହିଁ-
ସମ୍ମତି ଦେଉଛି, ସ୍ୱର୍ଣ୍ଣଶିବିକାରେ
ଆସିବେ ମୋ ପୁରେ ସାଇଁ ।
ମର୍ଯ୍ୟାଦା ଦୃଷ୍ଟିରୁ ଋଷିମାନେ ଆସି
ବୋହିବେ ଶିବିକା ଭାର
ଏଥିରୁ ବୁଝିବି ମୋ ଯୋଗ୍ୟ ପୁରୁଷ-
କେତେ ଦୀପ୍ତି ଇନ୍ଦ୍ରଙ୍କର ।
ଏତିକି କହିଲେ ସମାଧାନ ହେବ ସବୁ
ବିଳମ୍ବ ନ କରି ପଠାନ୍ତୁ ବାରତା
ପାପୀ ପରାଭବ ଲଭୁ ।

ସମ୍ମତି ବାରତା ପାଇ ନବଇନ୍ଦ୍ର
ଆସ୍ଫାଳନେ ହସି ହସି,
କହିଲେ ଆଜିଠୁ ମୋ' କୋଳ ମଣ୍ଡିବେ
ପରମ ଶ୍ରୀମୟୀ ସଚୀ ।

ସ୍ୱର୍ଣ୍ଣ ଶିବିକାକୁ କାନ୍ଧରେ ବୋହିଲେ
ଶ୍ରେଷ୍ଠ ଋଷିଗଣ ଆସି,
ଅଭିସାର ପଥେ ଯାତ୍ରା ଆରମ୍ଭିଲେ
ନବୀନେନ୍ଦ୍ର ହସି ହସି ।
ଋଷିଏ ନୁହନ୍ତି କୁଶଳୀ ବାହକ
ଚାଲୁଥାନ୍ତି ଥିରିଥିରି,
ଅସ୍ଥିର ନହୁଷ ଚିତ୍କାରି କ୍ରୋଧେ,
କହିଲେ କି ସର୍ପ ଚାଲି ।
ମହର୍ଷି ଅଗସ୍ତ୍ୟ ଦେଲେ ଅଭିଶାପ
'ହୋଇ ଯାଅ ତୁମେ ସର୍ପ'
ଆଖି ପିଛୁଳାକେ 'ସର୍ପ' ହେଲେ ଇନ୍ଦ୍ର
ତୁଟିଗଲା ସବୁ ଦର୍ପ ।
ପାପ ମାଣ ଗଲା ପୂରି,
ଅହଂକାର ମଦେ ମର୍ଯ୍ୟାଦା ଲଂଘନେ
ଇନ୍ଦ୍ର ପଦ ଗଲା ସରି ।

୨୦/୩/୨୦୦୯
ଅନୁଗୁଳ

# ଗୁରୁଭକ୍ତ ଉଦ୍ଧାଳକ

ଦୀର୍ଘ ଅତୀତରେ ଏଇ ଭାରତରେ
'ଧୌମ୍ୟ' ନାମେ ଥିଲେ ମହର୍ଷି ଏକ,
ମୁନି ଗଣ ମଧ୍ୟେ ଅତ୍ୟନ୍ତ କର୍ମଠ
ନୀତିବାଦୀ ରୂପେ ଥିଲାତ ଟେକ ।
କଠୋର ତାଙ୍କର ଅନୁଶାସନ,
ତାଙ୍କରି ଆଦର୍ଶେ ଦୀକ୍ଷିତ ତାଙ୍କ ଶିଷ୍ୟଗଣ ।

ପାଞ୍ଚାଳ ଦେଶର ବ୍ରାହ୍ମଣ ଯୁବକ
'ଆରୁଣି' ତାଙ୍କର ଶିଷ୍ୟରୁ ଜଣେ,
ଉପମନ୍ୟୁ, ବେଦ, ଅନ୍ୟ ଦୁଇ ଶିଷ୍ୟ
ରହିଥାନ୍ତି ଗୁରୁ ବନ ଆଶ୍ରମେ ।
ଋଷୀ ପତ୍ନୀ ଥିଲେ ଜନନୀ ସମ,
ପାଳୁଥିଲେ ତାଙ୍କୁ ସ୍ନେହ ଶରଧାରେ
ସତେ ଅବା ତାଙ୍କ ପ୍ରିୟ ସନ୍ତାନ ।

ଦିନେ ଧୌମ୍ୟ ମୁନି କହିଲେ, "ଆରୁଣି ।
ଝିପିଝିପି ଝିପି ବରଷେ ମେଘ ,
ଯାଅ ବିଲମାନେ,ଭରିଦିଅ ଜଳେ
ଛାଡ଼ିବାର ନୁହେଁ ଏ ପାଣିପାଗ
କୁଦାଳଟା ନିଅ ବାନ୍ଧିବ ଘାଇ,
ନ ପାରିବ ପାଣି ବିଲରୁ ଯାଇ ।"

ଗୁରୁଙ୍କ ଆଦେଶେ ଚଳିଲେ ଆରୁଣି
ଆଶ୍ରମରୁ ଦୂର କେଦାର ମାନେ,
ପାଣି ଟୁଳୁ ଟୁଳୁ ଅଟେ ବିଲମାନ
ଭରି ଯାଇ ଅଛି ବରଷା ଜଳେ ।

ଦେଖିଲେ ଜାଗାଏ ହୋଇଛି ଘାଇ,
ମାଟି ଆଣି ଯେତେ ପକାଇଲେ ମଧ
ଘାଇ ବନ୍ଧାହୋଇ ପାରିଲା ନାହିଁ ।

ବେଳ ବୁଡ଼ିଲାଣି ମେଘ ଥମିଲାଣି
ଘାଇବନ୍ଧା କାମ ହେଲାନି ଶେଷ,
ସୁଅ ମୁହେଁ ଯାଇ ଶୋଇଗଲେ ସିଏ
ଅଟକିଲା ପାଣି ନ ବହେ ଲେଶ ।
ହେଲା ଆରୁଣିଙ୍କ ଆନନ୍ଦ ମନ,
ତଥାପି ନୁହଇ ଏହା ଦୀର୍ଘସ୍ଥାୟୀ
ନୁହଇ ଅବେଳେ ଏ ସମାଧାନ ।

ଏ ଯାଏ ଆରୁଣି ଫେରିନି ଆଶ୍ରମେ
ବାହାରିଲେ ଗୁରୁ, ଖୋଜିବା ପାଇଁ,
'ଆରୁଣି' 'ଆରୁଣି' ଡ଼ାକି ସେ ଅନ୍ଧାରେ
ବିଲମାଳେ ପଶି ଖୋଜିଲେ ଯାଇ ।
ଦୂରରୁ ଶୁଭିଲା ଆରୁଣି ସ୍ୱର,
'ଘାଇ ମୁହେଁ ମୁହିଁ ଶୋଇଛି ହେ ଦେବ
ପାରିଲିନି ବାନ୍ଧି ମୁହଁଟି ତାର ।

"ଧୌମ୍ୟ ମୁନି ଆସି ଆରୁଣିଙ୍କୁ ଦେଖି
ହାତ ଧରି ତଳୁ ଉଠାଇ ବୁକେ,
ଆଲିଙ୍ଗନ କରି, ଆଶୀର୍ବାଦ ଦେଲେ,
"ଗୁରୁ ଭକ୍ତି ତୁମ ଦୁର୍ଲଭ ଭବେ
ଆଜିଠାରୁ ତୁମେ ହୋଇବ ଖ୍ୟାତ,
ଉଦ୍ଧାରକ ବୋଲି 'ଉଦ୍ଦାଳକ' ନାମେ
ସର୍ବ ଶାସ୍ତ୍ର ଜ୍ଞାନେ ବିଶ୍ୱ ବିଖ୍ୟାତ ।"

ତା ୯.୩.୨୦୦୯, ଭୁବନେଶ୍ୱର

# ମହର୍ଷି ଶ୍ୱେତକେତୁ

ଗୁରୁଙ୍କ ଆଦେଶେ ଉଦ୍ଦାଳକ ଋଷି
ଆସି ପ୍ରବେଶିଲେ ଗୃହସ୍ଥାଶ୍ରମେ,
ଲକ୍ଷ୍ମୀଙ୍କ ଅଗ୍ରଜା, ହେଲେ ମୁନି ପତ୍ନୀ
ରଚିଲେ ସଂସାର ବିବାହ କ୍ରମେ
ଆଚରିଲେ ମୁନିମତ ଜୀବନ,
ସର୍ବ ଶାସ୍ତ୍ର ଶିକ୍ଷା ଦେଇ ଶିଷ୍ୟଗଣେ
କରିଥିଲେ ତାଙ୍କୁ ଶାସ୍ତ୍ର ନିପୁଣ ।

ଉଦ୍ଦାଳକ ଥିଲେ ଅତ୍ୟନ୍ତ ଉଦାର
ସର୍ବଗୁଣାଧାର ଅଟନ୍ତି ମୁନି,
ଅତି ଶ୍ରଦ୍ଧାଶୀଳ, ସନ୍ତାନ ବତ୍ସଳ
ଶିଷ୍ୟଗଣ ଥିଲେ ନୟନ ମଣି ।
ଯାଜ୍ଞବଲକ୍ୟଙ୍କର ସେ ଗୁରୁଦେବ,
ସର୍ବ ଶାସ୍ତ୍ର ବେତ୍ତା କରିଲେ ତାହାଙ୍କୁ
ପଣ୍ଡିତ ପଣରେ ସେ ଅଭିନବ ।

ଶ୍ୱେତକେତୁ ତାଙ୍କ ଅଟନ୍ତି ଆତ୍ମଜ
ତପୋବନ୍ତ ନୀତି ନିପୁଣ ଜ୍ଞାନୀ,
ସମାଜ ମଙ୍ଗଳ ପାଇଁ ରଚିଥିଲେ
ଅସରନ୍ତି ବିଧି ବିଧାନ ପୁଣି ।
ଅନୁଶାସନର ସୁରଭି ସୂଚି
କେତେ ସୁଭାଷିତ ଶାସ୍ତ୍ର ବାଣୀ ପୁଣି
ବିଶ୍ୱ ହିତ ପାଇଁ ଥିଲେ ସେ ରଚି ।
ଦିନେ ଜନନୀଙ୍କ ଅନୀତି ବେଭାର
ଦେଖି ଶ୍ୱେତକେତୁ ବ୍ୟଥିତ ମନ,
ଆଶ୍ରମ ଅତିଥି ମୁନିଙ୍କ ସହିତ
ଯାଇଛନ୍ତି ସାଥେ ତାଙ୍କ ଆଶ୍ରମ ।

ପିତା ଦେଇଛନ୍ତି ସମ୍ମତି ତାଙ୍କୁ,
ରଜନୀ ବିତାଇ ସେ ଫେରିଆସିବେ ଏ ଆଶ୍ରମକୁ ।

କ୍ରୋଧେ ଜର୍ଜରିତ ହେଲେ ଶ୍ୱେତକେତୁ
ଉଦ୍ଦାଳକ ଆସି କହିଲେ ବତ୍ସ,
ଏହା ଅଟେ ପରା ସାମାଜିକରୀତି
ପରିହାର ତୁମେ କରହେ ରୋଷ ।
କରି ନାହାନ୍ତି ସେ ଅନ୍ୟାୟକିଛି,
ଏଥିପାଇଁ ତୁମେ ବିବ୍ରତ ନ ହୁଅ
ମନରୁ ସନ୍ତାପ ଦିଅ ହେ ପୋଛି ।

ଶାନ୍ତ ହେଲାନାହିଁ ଆନ୍ଦୋଳିତ ମନ
କଠୋର ଆଚାର ସଂହିତା ବଳେ,
ଶୃଙ୍ଖଳିତ କଲେ ବିବାହ ପ୍ରଥାକୁ
'ଏକ ପତ୍ନୀ ପତି ବ୍ରତ' ବିହିଲେ
ସୁଖୀ ପରିବାର ସମାଜ ପାଇଁ
ଲଂଘନ କରିଲେ ଏ' ଅନୁଶାସନ
ମହା ପାପୁ ଆଉ ନିସ୍ତାର ନାହିଁ ।
ସେଦିନୁ ସମାଜେ ପ୍ରଚଳିତ ଏଇ ପବିତ୍ର ପ୍ରଥା
ଶ୍ୱେତକେତୁ ମହାଋଷିଙ୍କର ଏହା ମହାନ୍ ଗାଥା ।

୩୦.୩.୨୦୦୯
ଭୁବନେଶ୍ୱର

# ରାଜାଙ୍କ ମନ୍ତ୍ରୀ ପରୀକ୍ଷା

ଦୀର୍ଘ ଅତୀତରେ ବିଦର୍ଭ ନଗରେ
ଥିଲେ ଜଣେ ନରପତି
ଅତି ଜ୍ଞାନୀ ମାନୀ ବିବେକୀ ସେ ଗୁଣୀ
କରୁଣା କୋମଳମତି ।

ମହାମନ୍ତ୍ରୀଙ୍କର ଅକାଳ ବିୟୋଗେ
ସେ ପଦ ହୋଇଲା ଶୂନ୍ୟ
ଚୟନ କରିବେ ଯୋଗ୍ୟ ବ୍ୟକ୍ତି ଏକ
ମନ୍ତ୍ରୀପଦ ହେବ ପୂର୍ଣ୍ଣ ।

ଯୋଗ୍ୟତା ଭିତ୍ତିରେ କରିବେ ଚୟନ
ପ୍ରାର୍ଥୀଙ୍କ ମଧ୍ୟରୁ ଜଣେ
କାହାକୁ ଡାକିବେ ଚୟନ ନିମିତ୍ତ
ସ୍ଥିର କଲେ ମନେ ମନେ ।
ପରଦିନ ରାଜା କରିଲେ ପରୀକ୍ଷା
ଅଭିନବ ଉପାୟରେ
ତାଲାଟିଏ ଆଣି ଝୁଲାଇ ଦେଲେ ସେ
ଉଆସର ଏକ ଦ୍ୱାରେ ।

କହିଲେ ଅଟଇ ବିଚିତ୍ର ଏ' ତାଲା
ଅଦ୍ଭୁତ ଗଢଣ ତା'ର,
ଅତି କୌଶଳରେ ବୁଦ୍ଧିକୁ ଖଟାଇ
ଖୋଲିଲେ ଫିଟିବ ଦ୍ୱାର ।

ଯେଉଁ ବିଶାରଦ ଏ ତାଲା ଖୋଲିବେ
ସେ ହେବେ ରାଜ୍ୟର ମନ୍ତ୍ରୀ,
ଶତ ସମସ୍ୟାର ପ୍ରତୀକ ଏ ତାଲା
ବିଚିତ୍ର ଏହାର ଗତି ।

ଯୋଗ୍ୟ ହାତେ ତାଲା ସହଜେ ଖୋଲିବ
ଅଯୋଗ୍ୟ ଛୁଇଁଲେ ତାକୁ
ଜଟିଳରୁ ହେବ-ସେ ଜଟିଳତର
ମଙ୍ଗିବନି ଖୋଲିବାକୁ ।
ଅଟେ ଏ କୁହୁକ ତାଲା,
ନିଜର ଯୋଗ୍ୟତା ପରୀକ୍ଷା କର ହେ
କାହା ଭାଗ୍ୟ ଉଚ୍ଚ ଭଲା ।

ତିନିଙ୍କ ଭିତରୁ ଦୁଇଜଣ ବସି
ଘାଣ୍ଟିଲେ କୋଳପ ପୋଥି,
ବିଚିତ୍ର ଗଠନ ଚିତ୍ର ଖୋଜିହେଲେ
ନିଶ୍ଚିନ୍ତ ଆରକ ସାଥୀ ।
ପ୍ରଥମ ଜଣକ ଦ୍ୱାର ପାଶେ ଯାଇ
ନିରୀକ୍ଷଣ କଲେ ତାଲା
ଦ୍ୱିତୀୟ ଜଣକ ତା' ତଳ ଉପର
ଚାହିଁ ରହିଥିଲେ ପରା ।
ଶେଷରେ ଆସିଲେ ଫେରି
ବସିଗଲେ ଦୁହେଁ ଗଭୀର ଚିନ୍ତାରେ
ତାଲା ପୋଥିଟିକୁ ଧରି ।

ଶେଷରେ ରାଜନ ତୃତୀୟ ବ୍ୟକ୍ତିଙ୍କୁ
କହିଲେ, "ଆପଣ ଯାଇ
ନିଜ ଭାଗ୍ୟ ଥରେ ପରୀକ୍ଷା କରନ୍ତୁ
ତାଲାଟିକୁ ଖୋଲି ଦେଇ ।"

ରାଜାଦେଶ ପାଇ, ଶାନ୍ତ ମନ ନେଇ
ଦ୍ୱାର ପାଶେ ଗଲେ ଚଳି,
ତାଲାଟିକୁ ଧରି ଟାଣି ଦେଲେ ହାତେ
ଅକ୍ଳେଶରେ ଗଲା ଖୋଲି ।

ସାଧୁ ! ସାଧୁ ! ବୋଲି କହିଲେ ରାଜନ,
ସମର୍ପିଲେ ମନ୍ତ୍ରୀ ପଦ,
ଅନ୍ୟ ଦୁଇଜଣ ପିଠି ଥାପୁଡ଼ାଇ
କହିଲେ ନ ବହ ଖେଦ ।
ପ୍ରତିଟି ସମସ୍ୟା ସମାଧାନ ପାଇଁ
ତା'ଭିତରେ ପଶ ଆଗେ,
ତାହାର ଉତ୍ପତ୍ତି କାରଣ ଖୋଜିଲେ
ସମାଧିତ ହେବ ତେବେ ।
ପରଖ ନକରି କାରଣ ନ ଜାଣି
କରିଲେ ଉଦ୍ୟମ ଯାହା,
ମିଳେନାହିଁ ଫଳ ବଢଇ ଜଞ୍ଜାଳ
ନିଶ୍ଚେ ବ୍ୟର୍ଥ ହେବ ତାହା
ଉପସ୍ଥିତ ବୁଦ୍ଧି ଲୋଡ଼ା
ପୋଥିବାଇଗଣ ନ ହୁଏ ତିଅଣ
ଠାଆରେ ନ ହୁଏ ବଡା ।

ତା୨୬/୦୧/୨୦୦୯
ଭୁବନେଶ୍ୱର

# ଦାସିଆ ବାଉରି

ଦାସିଆ ବାଉରି  ନାମଟି ତାହାର
ବାଲିଗାଁ ତା'ର ଘର
ବାଉରି କୂଳରେ ଜନମ ତାହାର
ଲୁଗା ବୁଣା ପେସା ତା'ର ।
ଦୁଇକୋଶ ଦୂର ଅଟଇ ତା' ଗାଁ
ପବିତ୍ର ଶ୍ରୀକ୍ଷେତ୍ର ଧାମୁ
ସ୍ୱାମୀ ସ୍ତ୍ରୀ ଥିଲେ କାଳିଆ ଭକତ
ଲଭନ୍ତି ଆନନ୍ଦ, 'ନାମୁ' ।

ଲୁଗାବିକି ଯାହା ମିଳେ ଦି' ପଇସା
ଆଗହୁଏ ସୂତାକିଣା
ସେଥିରୁ ବଳିଲେ ଘରେ ଖର୍ଚ୍ଚ ହୁଏ
ତେଲ ଲୁଣ ହୁଏ ଅଣା  ।
ସୁଟୁରୁ ବୁଟୁରୁ ତା' ସଂସାର ଯାଏ ଚଳି,
କାହା ପାଶେ ସିଏ ହାତ ନ ପତାଏ
ସନ୍ତୋଷେ ଥାଏ ବୋଲି ।
ବୈଷ୍ଣବ ଦୀକ୍ଷା ଘେନିଥିଲା  ସିଏ
'ଜଗନ୍ନାଥ ଦାସ' ଗୁରୁ,
ଭଜନ କୀର୍ତ୍ତନେ ବିଭୋରିତ ମନ
ଅଶ୍ରୁ ଝରେ ନୟନରୁ  ।
ଗୁଣ୍ଡିଚା ଯାତକୁ ଯାଇଥିଲେ ସିଏ
ଦିଅଁଙ୍କୁ ଦର୍ଶନ କରି,
ବିଜେ ହୋଇଥିଲେ ତିନିରଥେ ପ୍ରଭୁ
ଆନନ୍ଦରେ ଗଲା ଭରି ।

ବିକଳ କଣ୍ଠରେ ଡ଼ାକିଲା ଦାସିଆ
ପତିତପାବନ ପ୍ରଭୁ ।
ପତିତ ପାମର ଏ ଦାସିଆ ଛାର
ଆଜି ପାଇଗଲା ସବୁ ।
ଜୀବନ ହୋଇଲା ଧନ୍ୟ,
ମନ କାମନା ମୋ' ପୂରଣ ହୋଇଲା
ନାହିଁ କିଛି ଭିକ୍ଷା ଅନ୍ୟ ।

ମହାଆନନ୍ଦରେ ଫେରିଲା ଘରକୁ
ଭୁଲିଗଲା ଭୋକ ଶୋଷ,
ସସ୍ନେହେ ଘରଣୀ ବାଢିଦେଲା ଆଣି
କରିବାକୁ ମନତୋଷ ।
ପେଜସରସର ଧୋବ ଫରଫର
ଭାତରେ ଥୋଇଛି ଶାଗ,
ଲାଲ ଫଙ୍ଗଥିବା କାଳିଆ ବଡାରେ
ବାଢି ଅଛି ତା'ର ପାଗ ।

ଦେଖିଲା ଦାସିଆ ଚକାଡୋଳା ପରି
ଦିଶୁଅଛି ଏହି ବଡା,
ଆନନ୍ଦେ ନାଚିଲା ଚଉପାଶେ ତା'ର,
ଛାଡ଼ି ଦେଉଳର ବେଢା-
ଉଭା ଆଜି ପ୍ରଭୁ ଏଥି,
ଜଗତର ନାଥ ପ୍ରଭୁ ଜଗନ୍ନାଥ
ସେତ ଅଗତିର ଗତି ।
ତା' ଭକତି ଦେଖି ସ୍ତବ୍ଧ ଚକିତ
ହେଲେ ସବୁ ଗ୍ରାମବାସୀ
ସମ୍ବୋଧିଲେ ସବୁ "ଭକତ ଦାସିଆ"
ଆନନ୍ଦରେ ହସି ହସି ।

ଆଉ ଦିନେ ସିଏ ଲୁଗା ବିକିବାକୁ
ଯାଇଥିଲା ଗାଁ ଗାଁ
ଦେଖିଲା 'ଗୋଟିଏ ନଡ଼ିଆ', ଗଛରେ-
ନୂଆ ଫଳି ଅଛି ଏହା ।
ଭାରି ଲୋଭାଣିଆ ହୋଇଛି ଶ୍ରୀଫଳ
ନେବାକୁ ବଳିଲା ମନ,
କି'ଦେଇ କିଣିବ ଭାବି ପାରିଲାନି
ହାତରେ ନାହିଁ ତା'ଧନ ।
ଲୋକଟିକୁ ଡାକି କହିଲା ସାଆନ୍ତେ
ଏ'ଫଳଟି ଦିଅ ତୁମେ,
ଠାକୁରଙ୍କ ପଦେ ସମରପି ଦେବି
ଶ୍ରୀଫଳ ଶ୍ରୀକ୍ଷେତ୍ର ଧାମେ ।
ବଦଳେ ନିଅ ଏ' ଡ଼ୋରିଆ ଗାମୁଛା
ଯତନେ ବୁଣିଛି ମୁହିଁ,
ଗାମୁଛା ଲୋଭରେ, ସେ'ଫଳଟି ଦେଲେ
କଲେ ନାହିଁ ତାକୁ, ନାହିଁ ।
ମହାଆନନ୍ଦରେ ନେଇ ସେ ଫଳଟି
ଗାଁ ଭାଇନାଙ୍କ ହାତେ,
ପଠାଇ ଦେଲା ସେ ବଡ଼ ଦେଉଳକୁ
ଯାଇପାରୁ ନାହିଁ ଆପେ ।
କହିଲା ଭାଇନା, "ଶ୍ରୀ ଜଗନ୍ନାଥଙ୍କୁ
ଭୋଗ ଟେକିଦେବ ନିଅ,
କହିବ, 'ଦାସିଆ ବାଉରି ଦେଇଛି
'ଅଛବ' ର ଭୋଗ ପାଅ ।'

ରତ୍ନସିଂହାସନୁ ଓହ୍ଲାଇ ଆସି ସେ
ନେବେ ଯଦି ହାତୁ ତୁମ,
ପତିତ କୁଳର ପତିତ ଜୀବନ
ସାର୍ଥକ ହୋଇବ ମମ ।
ନିଜେ ଆସି ଯଦି ନେବେନି ନଡ଼ିଆ,
ଅଛବର ଭୋଗ ବୋଲି
ଫେରାଇ ଆଣିବ ଘରକୁ ପଛକେ
ଥୋଇବନି ଭୋଗ ଥାଳି ।

ଶ୍ରୀକ୍ଷେତ୍ରେ ପହଞ୍ଚି ଭାଇନା ଆନନ୍ଦେ
ଗରୁଡ଼ସ୍ତମ୍ଭର ପାଶେ,
ଛିଡ଼ାହେଲେ ଆସି ନିମିଳିତ ନେତ୍ରେ
ଶ୍ରୀଫଳଟି ଧରି ତୋଷେ ।
କହିଲେ, "ହେ ନାଥ, ଦାସିଆ ଭକତ
ପଠାଇଛି ଭୋଗ ଏତ
ଶ୍ରୀହସ୍ତେ, ଶ୍ରୀଫଳ ଘେନା କରନ୍ତୁ ହେ
ପତିତପାବନ ନାଥ ।"
ଆଖି ଖୋଲି ସିଏ ଦେଖିଲାବେଳକୁ
ହାତ ହୋଇଅଛି ଖାଲି,
ନିମିଷକ ମଧ୍ୟେ କା'ହାତ ପରଶେ
ଶ୍ରୀଫଳଟି ଗଲାଚାଲି,
ବୁଝିପାରିଲେନି କି ରହସ୍ୟ ଏତ
ମନ୍ଦିରକୁ ଦଉଡ଼ିଲେ
ଦେଖିଲେ ପଡ଼ିଛି ନଡ଼ିଆ ଖୋଳପା
କତା ସିଂହାସନ ତଳେ

"ଧନ୍ୟ ଧନ୍ୟ ପ୍ରଭୁ ! କହିଲେ ଗୋସାଇଁ
ଭକତ ବତ୍ସଳ ହରି,
କୁସୁମ ପରଶେ ପଟ ନିସ୍ତରିଲା
ବେନି ଜନ ଗଲୁ ତରି ।
ମହାନ ଭକତ 'ବାଲିଗାଁ ଦାସିଆ'
ପ୍ରଭୁଙ୍କ ଚରଣ ଦାସ,
ମହିତଳେ ସିଏ ରଖିଲେ କୀରତି
ଅଲିଭା ତାଙ୍କର ଯଶ ।"
ଚତୁର୍ଦ୍ଧା ମୂରତି ଧରି ମହାପ୍ରଭୁ
ତା' ସମ୍ମୁଖେ ହେଲେ ଉଭା,
ଭକ୍ତି ଗଦ ଗଦ ଦାସିଆ ବାଉରି
ଶ୍ରୀରୂପ ନୟନ ଲୋଭା ।
କହିଲେ, 'ଯେ ବର ମାଗିବୁ ମାଗ ତୁ
ଆସିଅଛି ପାଶେ ତୋର,
କହିଲା ଦାସିଆ, "ତବ ଦରଶନ
ମୁକତି ସୋପାନ ମୋର
ଲୋଡ଼ାନାହିଁ ବର ଆନ,
ଚିରଦିନ ପ୍ରଭୁ ଶ୍ରୀପଦ ପଙ୍କଜେ
ରହି ଥାଉ ମୋର ଧ୍ୟାନ ।"

୨୭/୪/୨୦୦୯, ଭୁବନେଶ୍ୱର

ବି.ଦ୍ର; ଦାସିଆ ବାଉରିଙ୍କ ଲିଖିତ ୨ଟି ପୋଥି ପ୍ରକାଶିତ ହୋଇଛି । ବାଲିଗାଁ ଦାସ ଭାଗବତ ଓ ଆଗତ ଭବିଷ୍ୟ ।

# ଇଂ ଏମ୍ ବିଶ୍ୱେଶ୍ୱରାୟା

ଆଜି କେତେ କେତେ ବଡ଼ ବଡ଼ିଆ
ଦିଅଁ ସାଥେ ସେତ ଖଟୁଲିଖିଆ,
ବିବେକ ତାଙ୍କର ହୋଇଛି ବଣା
କେଉଁଥିରେ ତାଙ୍କ ନଥାଏ ଉଣା ।
ତୃପତି ନ ଥାଏ ପାଇଲେ ଯେତେ
ଶାନ୍ତି ନ ଥାଏ କି ସନ୍ତୋଷ ନ ଥାଏ -
ଗ୍ରାସି ଚାଲିଥାନ୍ତି ସେ ବେନି ହାତେ ।

ଏପରି ଅଛନ୍ତି ଅନେକ ଲୋକ
ଘନ ଅନ୍ଧକାରେ ସେ ମହାଦୀପ ।
ମହା କାରୁଣିକ ସେ ମହାଯଶା,
ସତ୍ୟ ନ୍ୟାୟ ନିଷ୍ଠା ହୃଦୟେ ବସା -
ବାନ୍ଧେ ତାଙ୍କର,
ସମସ୍ୟା ସାଧନେ ବୁଦ୍ଧି ପ୍ରଖର ।

ସେହିପରି ଜଣେ ଯୁଗ ପୁରୁଷ
ବିଶ୍ୱେଶ୍ୱରାୟାଙ୍କ ଅତୁଳ ଯଶ ,
ଇତିହାସ ପୃଷ୍ଠା କଲେ ମଣ୍ଡନ
କୃଷି ପ୍ରଧାନ ଏ ଭାରତ ବର୍ଷରେ
ସବୁଜ ବିପ୍ଳବେ ଦେଲେ ସେ ମନ ।

ମହୀଶୁର ରାଜ୍ୟେ ତାଙ୍କର ଘର
ସିଏ ଥିଲେ ଯନ୍ତ୍ରୀ..ମନ୍ତ୍ରୀ, ରାଜ୍ୟର ।
ସବୁ ସମୃଦ୍ଧିର ମୂଳରେ ସିଏ,
ତାଙ୍କ ଅବଦାନ ଭୁଲିବ କିଏ !

ସେ ସାଧୁ ସଚୋଟ ନିରାଡ଼ମ୍ବର
ଥିଲା ନୀତି ନିଷ୍ଠା କର୍ମ ସଂସ୍କାର,
ରଖିଥିଲେ ପାଖେ ଦୁଇଟି ବତି
ସରକାରୀ କାମେ, ସରକାରୀ ବତି, ଲଗାନ୍ତି ନିତି ।
କାମ ସରିଗଲେ ଲିଭାଇ ଦେଇ
ନିଜ ବତିଟିକୁ ଜଳାଇ ଦିଅନ୍ତି
ସେ ନିଜ ପାଇଁ ।
ବାନ୍ଧିଥିଲେ ବନ୍ଧ 'କୃଷ୍ଣ ସାଗର'
ବୃନ୍ଦାବନ ଉଦ୍ୟାନଟି ତାଙ୍କର
କାଳଜୟୀ କୀର୍ତ୍ତି, ରହିଛି ଟେକ
ମହୀଶୂର ଆଜି ଗର୍ବିତ ହୋଇଛି -
ଦେଇଛନ୍ତି ସିଏ ନୂତନ ଭେକ ।

ଆମ ହୀରାକୁଦ ବନ୍ଧ ଯୋଜନା
ବନ୍ଧାଇଲେ ବନ୍ଧ ସେ ମହାମନା,
ପଚିଶ କି.ମି.ରୁ ଊର୍ଦ୍ଧ୍ୱ ଦୀର୍ଘତା
ଶହେ ପଞ୍ଚାନବେ ଫୁଟ ଉଚ୍ଚତା ।
ଏ ଜଳଭଣ୍ଡାର ଟା'କ୍ଷେତ୍ର ଫଳ
ଦୁଇ ଆଠ ଆଠ (୨୮୮) ବର୍ଗ ମାଇଲ
ଦୀର୍ଘତମ ଅଟେ ଏ ନଦୀ ବନ୍ଧ
ଟାଳି ଦେଇ ଅଛି ବନ୍ୟା ବିପଦ ।

ହୀରାକୁଦ ଜଳ, ବିଦ୍ୟୁତ କେନ୍ଦ୍ର
ଓଡ଼ିଶାକୁ କୃଷି ଶିଳ୍ପ ସମୃଦ୍ଧ
କରିଛି ଆଜି,
ବିଶ୍ୱେଶ୍ୱରାୟାଙ୍କ ଅଗଣିତ କେତେ
କୀରତି ରାଜି ।
ହାଇଦରାବାଦ, ସିକନ୍ଦରାବାଦ ଦୁଇ ସହର
ହିମାୟତ, ଓସମାନ ସାଗରରୁ ପାଆନ୍ତି ଜଳ ।
ମୂଷା, ଇଷା ନଦୀ ଉପରେ ନିର୍ମିତ ଏ ବନ୍ଧ ଦୁଇ
ବନ୍ୟା ନିୟନ୍ତ୍ରଣ କରି ଦେଉଅଛି ଜଳ ଯୋଗାଇ
ବିଶ୍ୱେଶ୍ୱରାୟାଙ୍କ ଏ ଅଟେ ଦାନ,
ସେ କି ମହାନ୍ !

ଚନ୍ଦନ ବନର ନନ୍ଦନ ବନ, ସେ ମହୀଶୂର
କାରଖାନା ଗଢ଼ି ପ୍ରସ୍ତୁତ କଲେ
ଚନ୍ଦନ ସାବୁନ, ଚନ୍ଦନ ତେଲ ।
ବଢ଼ିଲା ଖ୍ୟାତି,
ଶିଳ୍ପ ବିପ୍ଳବର ଯୁଗଆରମ୍ଭିଲେ ସେ ମହାଯତୀ ।

ଅଟୋ ମୋବାଇଲ ଶିଳ୍ପପ୍ରତିଷ୍ଠାରେ
ଦେଲେ ସେ ଧ୍ୟାନ,
ଶିଳ୍ପ ସମୃଦ୍ଧ ହୋଇବ ଭାରତ
ବଳିଲା ମନ
ଦେଶବିଦେଶରୁ ସହଯୋଗୀ ଗଣ ଆସିଲେ ଧାଇଁ
ସାକାର କରିଲେ ସ୍ୱପ୍ନ ତାଙ୍କର ପ୍ରେରଣା ପାଇ ।

ଜନ୍ମ ହୋଇଥିଲେ ଗରିବ ଘରେ
ମହାନତା ଥିଲା ତାଙ୍କ ଅନ୍ତରେ ।
ଶତ୍ରୁ ବୋଲି ଜଣେ ନଥିଲେ କେହି,
ପର ଉପକାରୀ ଅଟନ୍ତି ପୁଣ୍ୟାତ୍ମା
ଫକିର ସାଜିଲେ ସେ ଦେଇଦେଇ ।
ନିଜ ସେବାକାରୀ ନାମେ ଲେଖିଦେଲେ
ସେ ଘରବାଡ଼ି,
ଭଡ଼ା ଘରେ ପ୍ରାଣ ପ୍ରୟାଣ ହୋଇଲା
ଚାଲିଗଲେ ପ୍ରିୟ ଦେଶକୁ ଛାଡ଼ି ।
ସେ ମହାପ୍ରୟାଣ, ସେ ଶେଷ ଦେଖା,
ତଥାପି ଅଟଇ ଅନିର୍ବାଣ ସଦା ସେ ଦୀପଶିଖା ।

ତା ୨୮/୪/୨୦୦୯
ଭୁବନେଶ୍ୱର

# ସକ୍ରେଟିସ୍

କିଏ ସେ ବସିଛି ତହିଁ ମୋଟା,ଗେଡ଼ା ନିଦା ମଣିଷଟି
ଶରୀର ପୃଥୁଳ ତାର ଚେପ୍ଟାନାକ ବିକୃତ ରୂପଟି ।
ଏଥେନ୍‌ସ ସହର ମଧ୍ୟେ ସବୁଠାରୁ କଦାକାର ସିଏ
ଗ୍ରିସ୍ ଦେଶରେ ମଧ ଏହିପରି ନାହିଁ ଲୋକଟିଏ ।
ବୃତ୍ତିରେ ସେ ପଥର କଟାଳି,
କାଟୁଥାଏ ପଥରକୁ ହାତେ ଧରି ମୁଗୁର ବଟାଳି ।

ପିତାଙ୍କ ସାଥିରେ ବସି ରାତିଦିନ କରୁଥାଏ କାମ
କେ' କେତେ କରନ୍ତି ଥଟା ପରିହାସ ଅବା ହେୟ ଜ୍ଞାନ ।
ନଥାଏ ନଜର ତହିଁ, ପଥରରେ ହୋଇଛି ପଥର,
ସତେ ଅବା ହୋଇଅଛି ରୂପେ ତା'ର ରୂପ ରୂପାନ୍ତର ।
ବେଳେବେଳେ ସମାଧିସ୍ଥ ହୋଇଯାଏ ତହିଁ,
ଦୈବୀବାଣୀ ଶୁଣେ କାନେ, ମୁଗ୍ଧ ମୋହେ ଚିତ୍ତ ଉଠେ ଚେଇଁ ।

ପିତାଙ୍କ ବୃତ୍ତିରେ ଏବେ ମନ ତା'ର ବଳୁନାହିଁ ଆଉ
ପଥର କାଟୁନି ସିଏ ମେଣ୍ଟିବାକୁ ତା'ର ପେଟ ଦାଉ ।
କିସ ଭାବି ଯୋଗ ଦେଲା, ଯାଇ ଦିନେ-ସୈନ୍ୟ ବିଭାଗରେ
ତା' ବୀରତା ଦେଖାଇଲା ହସି ହସି ସମର ଭୂମିରେ ।
ଶାନ୍ତି କିନ୍ତୁ ମିଳିଲାନି ତାକୁ,
ମଣିଷ, ମଣିଷ ରକ୍ତେ ଯୁଦ୍ଧନାମେ ହୋରି ଖେଳିବାକୁ ।
ଯୁଦ୍ଧକ୍ଷେତ୍ର ପରିହରି, ଛିଡ଼ା ହେଲା ରାଜରାସ୍ତାପରେ
ଯାହାକୁ ଦେଖିଲା ସିଏ ପଥଧାରେ ଗଭୀର ଶ୍ରଦ୍ଧାରେ,.

କହିଲା, "କରନି ଭାଇ ଜୀବନରେ ଦେବାଦେବୀ ପୂଜା,
ଏ ବହୁ ଦେବତା ପୂଜା ଭେଦିଅଛି ଆମ ଅସ୍ଥି ମଜ୍ଜା ।
କର ପରିହାର,
ଏ ସଂସାରେ ଅଗ୍ରପୂଜ୍ୟ ସେଇ ଏକା ପରମ ଈଶ୍ୱର ।

ଦେବ ଦେବୀ ପୂଜାକରି ପଥଭ୍ରଷ୍ଟ ହୁଅନାହିଁ ବାରେ
ଜୀବନକୁ ହଜାଅନି, ବହୁ ଦେବ ଦେବୀଙ୍କ ଗହଳେ ।
ଯିଏ ସ୍ରଷ୍ଟା, ସେ ପାଳକ,ଏ ସୃଷ୍ଟିର ସଂହାରକ ସିଏ
ସେ ଈଶ୍ୱର ପୂଜା ବିନା ନାହିଁ ଆଉ ଶ୍ରେୟ ପଥଟିଏ ।
ଲୋକେ ଶୁଣି ହୋଇଲେ ଚକିତ,
ଭାବିଲେ ପାଗଳ ଏକି ହରାଇଛି ଜ୍ଞାନ ହିତାହିତ ।

ପ୍ରତିବାଦ କଲା ଯିଏ, ତା'ସାଥିରେ ଯୁକ୍ତି କରି କରି
ପରାସ୍ତ କରନ୍ତି ତାକୁ,ଦର୍ଶନର ନୂଆ ଭାବ ଭରି,
ଏଥେନ୍‌ସ ନଗରବାସୀ ନାମ ଦେଲେ 'ନାସ୍ତିକ' ତାଙ୍କୁ
ଗୁହାରି କରିଲେ ଯାଇ ତା' ବିରୁଦ୍ଧେ ଏଥେନସ୍ ରାଜାଙ୍କୁ ।
ଏ' ଲୋକଟା ଭୟଙ୍କର ଅତି,
ଧର୍ମଦ୍ରୋହୀ, ଦେଶଦ୍ରୋହୀ ସକ୍ରେଟିସ୍ ସମାଜ ବିରୋଧୀ ।

ଏଥେନ୍‌ସ ନଗର 'ଡେଲଫ' ଗ୍ରାମରେ ମନ୍ଦିର ଥିଲା ଏକ
ଠାକୁର ତାହାର କଥା କହୁଥିଲେ ଗ୍ରୀସ୍‌ରେ ଥିଲା ଟେକ ।
ପ୍ରତି ପ୍ରଶ୍ନର ସଠିକ ଉତ୍ତର ଦେଉଥିଲେ ଠିକେ ସିଏ
ରାଜା ପଚାରିଲେ କହନ୍ତୁ ଦେବତା ! ଏ ରାଇଜେ ଜ୍ଞାନୀ କିଏ ?
ଦେବତା କହିଲେ ତୁମ -
ଗ୍ରୀସ୍ ଦେଶର ଜ୍ଞାନୀ ଜନ ଯିଏ, 'ସକ୍ରେଟିସ୍' ତାର ନାମ ।

ଦଣ୍ଡିପାରିଲେନି ଏଥେନ୍‌ସ ବାସୀ ବଦ୍ଧ ପାଗଳଟାକୁ
'କାନ୍ଥିପୀ' କିନ୍ତୁ ଛାଡୁନାହିଁ ତାଙ୍କୁ ଲୋକହସା କରିବାକୁ,
ଦେବ ଦେବୀ ପୂଜା କରିବାରୁ ସ୍ତ୍ରୀ, ସକ୍ରେଟିସ୍ ଦେଲେ ଗାଳି
ମଇଳା ପାଣିରୁ ବାଲଟିଏ ଆଣି ମୁଣ୍ଡରେ ଦେଲା ଢାଳି-
ରାଗ ଜର ଜର ହୋଇ,
ଚହଳ ପଡ଼ିଲା ପଳାଇଛନ୍ତି ସେ, ସ୍ତ୍ରୀ ଠାରୁ ମାଡ଼ ଖାଇ ।

ତାଙ୍କୁ ଫଟା ଖରା,ଖଇ ଫୁଟା ତାତି ଦିନ ଦି' ପହରେ ଦିନେ
ନିଆଁ ହୁଳାଟିଏ ଧରି ବୁଲୁଥାନ୍ତି ସହରର ଗଳି କୋଣେ,
ପ୍ରତି ଘର ଆଗେ ଦେଖାଉ ଅଛନ୍ତି, ପୋଡ଼ି ଦେବେ ଅବା ଘର
ରାଜା ସ୍ୱ ଚକ୍ଷୁରେ ଦେଖିଲେ ନଅରେ ପଠାଇଲେ ତାଙ୍କ ଚାର ।
ବନ୍ଦି କରିଲେ ତାଙ୍କୁ ପ୍ରହରୀ ଗଣ,
ରାଜା ପଚାରିଲେ, 'ଏ ଅପରାଧର କୁହ ହେ କାରଣ କ'ଣ ?'

ସକ୍ରେଟିସ୍ ତାଙ୍କୁ କହିଲେ; 'ରାଜନ୍ । ହୁଳାଧରି ହାତେ ମୁହିଁ
ଖୋଜି ବୁଲୁଥିଲି, ଦର୍ଶନ ମୋର କିଏ ବୁଝିଅଛି କାହିଁ ।
ସୂର୍ଯ୍ୟ କିରଣ ଅକୁଳନ ହେଲା ବୋଲି,
ହାତେ ଧରିଥିଲି ନିଆଁ ହୁଳାଟିକୁ ଖୋଜୁଥିଲି ବୁଲି ବୁଲି ।

ରାଜାଙ୍କ ମନରେ ବିଷଭରି ଦେଲେ ସଭାରେ ବଇରୀ ଗଣ
ଧର୍ମଦ୍ରୋହ,ଦେଶଦ୍ରୋହ,ଗୃହଦାହ ଗର୍ହିତ ଦୋଷ ମାନ ,
ତାଙ୍କ ବିରୁଦ୍ଧରେ ପ୍ରମାଣିତ ହେଲା ମିଳିଲା ମରଣ ଦଣ୍ଡ
ଜନ ଦରବାରେ ଦଣ୍ଡିତ ହେଲେ ,ବୋଲି ନାସ୍ତିକ ଭଣ୍ଡ ।
'ହେମଲକ୍' ବିଷପାତ୍ର ହାତରେ ଧରି,
ଢକ ଢକ ସିଏ ପିଇ ଦେଲେ ତହିଁ, ପଲକେ ପଡ଼ିଲେ ଟଳି ।

ଜ୍ଞାନାଲୋକ ପାଇଁ ବିଶ୍ୱ ଦରବାରେ ଯେ ଚିର ବନ୍ଦନୀୟ
ଅଜ୍ଞାନୀଙ୍କର ଘୃଣା ଦରବାରେ, ପ୍ରଜ୍ଞାର ହେଲା କ୍ଷୟ ।
ମହାମାନବର ମହାଯାତ୍ରା ହେଲା ଶେଷ,
ବିଳାପ କରୁଛି ଅଶ୍ରୁ ଝରାଇ ମାନବର ଇତିହାସ ।

ଗ୍ରୀସ୍‌ର ଦାର୍ଶନିକ ସକ୍ରେଟିସ୍ ଖ୍ରୀ.ପୂ.୪୬୯-୩୯୯ ସମୟର ଲୋକ । ତାଙ୍କ ସମୟରେ ଗ୍ରୀସ୍ ସାମ୍ରାଜ୍ୟରେ ବହୁ ଦେବତାପୂଜା ପ୍ରଚଳିତ ଥିଲା ଏବଂ ସମାଜରେ ଅନେକ କୁସଂସ୍କାର ଥିଲା । ସେ ତାହା ବିରୋଧ କରିବାରୁ ସର୍ବସାଧାରଣଙ୍କ ସମକ୍ଷରେ ବିଷ ପାନ କରିବାକୁ ଦିଆଯାଇଥିଲା । ବିଷପାତ୍ର ଧରି ସେ କହିଥିଲେ; I to die and you to live, which is better that God knows.

୨୩/୫/୨୦୦୯, ଅନଗୁଳ

# ଅନିର୍ବାଣ ଶିଖା

ବୁଲା ଫକିରଙ୍କୁ କିଏ ବା ନ ଜାଣେ
ଏ ମହି ମଣ୍ଡଳ ପରେ
'ଗାନ୍ଧୀ ବାବା' ବୋଲି କହନ୍ତି ସମସ୍ତେ
କାଳଜୟୀ,ସଂସାରରେ ।
ଯୁଦ୍ଧ ଜର୍ଜରିତ ଜଗତକୁ ସିଏ
ଶୁଣାଇ ଅହିଂସା ବାଣୀ
'ଅସ୍ତ୍ରବଳେ ଜୟ, ଜୟ ନୁହେଁ କେବେ'
ହୃଦୟ ପାରିଲେ ଜିଣି-
ହୋଇବ ବିଜୟୀ ବୀର,
କହିଥିଲେ ସିଏ ବିଶ୍ୱ ମାନବଙ୍କୁ,
'ଅନ୍ତର ଜୟ କର ।'
ଏ'ଭାରତେ ଥିଲା ଫିରିଙ୍ଗୀ ଶାସନ
ପରାଧୀନତାର ବେଡ଼ି
ପିନ୍ଧିଲେ ଆମ ଭାରତ ଜନନୀ
ଅନ୍ଧାର ଗଲା ବେଢ଼ି ।
ଦଳିତ ପୀଡ଼ିତ ହତ ଭାଗ୍ୟ ଜନ
ପିଠିରେ କୋରଡ଼ା ମାଡ଼
ବେଠି ଖଟୁଥିଲେ ସହୁଥିଲେ କେତେ
କଷଣ ଅତ୍ୟାଚାର ।
ଗୋରାଙ୍କ ମାହାଲେ ଖଟି,
ଯାହା ସେ ପାଆନ୍ତି, ଭୋକିଲା ରହନ୍ତି
ପୂରେ ନାହିଁ ପେଟ ପାଟି ।
ଲୁଣମରା ଥିଲା ଲୋକଙ୍କ ବେଉସା
ବେଆଇନ ହେଲା ତାହା
ତାଙ୍କ ଅଧିକାର ନେଲା ସରକାର
ଶୁଣିଲାନି କଥା କାହା ।

ଭାତ ପାଖୁ ଲୁଣ ଛଡ଼ାଇ ନେଲା ସେ
ଲୁହ ଢଳ ଢଳ ଆଖି
ଲୁଣ ଟିକେ ପାଇଁ ଦରିଆ ପାରିକୁ
ରହିଥିବ ସିଏ ଚାହିଁ ।
ଆସିବ ବିଦେଶୁ, ଲୁଣ
ପିନ୍ଧିବା ପାଇଁ ଆସିବ କପଡ଼ା
ମେଣ୍ଟିବ ଗୁହୁରାଣ ।

ଦୁଃଖ ବିଗଳିତ ବାବୁଜୀଙ୍କ ପ୍ରାଣ
ପାରିଲାନି ଆଉ ସହି
ଭାରତମାତାର ଦୁର୍ଦ୍ଦଶାଭାର
ନ ପାରିଲେ ଆଉ ବହି
ଅତ୍ୟାଚାରର ତାଲିକା ବଢୁଛି
କିଏ ବା ବୁଝିବ ଦୁଃଖ
ନିଜେ ବରିନେଲେ ଜନତା କଷଣ
ପରିହରି ନିଜ ସୁଖ ।
ଫକିର ବେଶରେ ସିଏ,
ବାହାରି ଆସିଲେ ରାଜ ଦାଣ୍ଡକୁ
ହାତରେ ଠେଙ୍ଗାଟିଏ ।
ଦୃଢତାର ଏହା ପତୀକ ଅଟଇ
ଦେଲେ ବିପ୍ଳବ ଡ଼ାକ
ଜାଗ୍ରତ ହୁଅ ସର୍ବହରା ହେ ।
ରଖ ଏ ଦେଶର ଟେକ ।
ମାନନାହିଁ କେହି ସେ କଳା କାନୁନ୍
ଲୁଣମାର ହୋଇ ମେଳି,
ଆମ ଅଧିକାର ବଜାୟ ରଖିବା
ବାଜିଲେ ବାଜୁରେ ଗୁଳି ।
ଭାତକଂସା ପାଖୁ ଛଡ଼ାଇଛି ଯିଏ ଲୁଣ,
ତା' ଆଇନ ଆମେ ମାନିବାନି,କେବେ
ଟାଳି ଦେବା ତାରଟାଣ ।

ବର୍ଜନ କରି ବିଦେଶୀ ବସ୍ତ୍ର
ପିନ୍ଧିବା ଆମେ ଖଦି,
ତାଙ୍କ ଲୁଗା ପିନ୍ଧି ଆମ ତନ୍ତକୁ
କରିବାନି ଆମେ ରଦି ।
ସ୍ୱାଧୀନତା ଆମ ଛଡ଼ାଇ ଆଣିବା
ଗୋରା ଶାସକର ହାତୁ,
ପଙ୍ଗପାଳକୁ ହଟାଇ ଦେବାରେ
ଆମ ସବୁଜିମା ଖେତୁ ।
ଆମେ ଦୁଇପୁଅ ଭାରତ ମାତାର
ହିନ୍ଦୁ ମୁସଲମାନ,
ଜନମ ଭୂମିକୁ ସ୍ୱାଧୀନ କରିବା
ଭୁଲି ମାନ ଅଭିମାନ ।
ହିମାଳୟ ଠାରୁ କୁମାରିକା ଯାଏ
ସରବେ ଉଠିଲେମାତି,
ସହିପାରିଲାନି ଫିରିଙ୍ଗ ଶାସନ
ଅସହଯୋଗର ତାତି ।
ଚାଲିଗଲା ଦେଶ ଛାଡ଼ି,
ବିଷ ମଞ୍ଜିଟି ପୋତି ଦେଇଗଲା
ଦେଶଟାକୁ ଦେଇ ଫାଡ଼ି ।
ଏ ମହାଦେଶକୁ ସ୍ୱାଧୀନତା ଦେଲେ
ଯେ ମହାମାନବ ଦିନେ,
ଆମରି ଭିତରୁ ଆତତାୟୀ ସାଜି
ବଦ୍ଧ ପାଗଳ ଜଣେ-
ନିଧନ କରିଲା ତାଙ୍କୁ,
ଲିଭାଇ ପାରିନି ଅନିର୍ବାଣ ସେ
ପ୍ରଜ୍ୱଳ ଶିଖାଟିକୁ ।

ତା ୮/୬/୨୦୦୯, ଅନଗୁଳ

# ସାହାଜାହାନ୍

ମୋଗଲ ସମ୍ରାଟ ସାହାଜାହାନ୍ ମୁଁ ସାହାଜାହାନ୍,
ଆଓରେଙ୍ଗଜେବ୍ ପିତାଙ୍କୁ ତା'ର ବନ୍ଦିକରିଛି-
ପାଇବାକୁ ଦିଲ୍ଲୀ ସିଂହାସନ ।
ଲାଲକିଲାର ରୁଦ୍ଧ କୋଠରି ବନ୍ଦିଶାଳେ
ଅବରୁଦ୍ଧ ମୁଁ ଦିଲ୍ଲୀ ସମ୍ରାଟ,
ଅସହାୟ ଆଜି ଏ'କାରାକୋଳେ ।

ନିର୍ମମ ସିଏ ହୃଦୟହୀନ
କରିଲା ଦାରୁଣ ଭ୍ରାତୃ ହତ୍ୟା ସେ
ଦାରା, ସୁଜା, ମୁରା, ପ୍ରିୟ ପୁତ୍ର ମୋ, ପ୍ରାଣର ପ୍ରାଣ ।
ସିଂହାସନ ଲାଭ ଲାଳସା ପାଇଁ
ପିତାଙ୍କୁ ତା'ର ବଧ କରିବାରେ ବିଫଳ ହୋଇ,
ବିସର୍ଜି ଅଛି କାରା କକ୍ଷର ରୁଦ୍ଧପୁରେ,
କ୍ଷମତା ଅନ୍ଧ ସେ କ୍ରୋଧ ଭରେ ।

ଜଗି ରହିଛନ୍ତି ପ୍ରହରୀ ସରବେ ରକ୍ତମୁଖା
ସତେବା ସକଳ ହିଂସ୍ର ପଶୁଏ ଅଛନ୍ତି ଭୁଖା ।
ସଂହାରି ବାକୁ, ସାହାଜାହାନ୍ କୁ ସେ ତିଳେ ତିଳେ
ରକ୍ତ ତା'ର ଶୋଷି ପିଇବାକୁ ସେ ପଳେ ପଳେ ।

ବନ୍ଦି ବାଦସା' କ୍ଷୁଧାରେ ଆତୁର, ସେ ତୃଷାତୁର
ଖାଦ୍ୟ ମିଳେନା, ପିଇବାକୁ ମଧ ନମିଳେ ଜଳ -

ଚାହିଦା ମତେ,
ପୁଅର ଆଦେଶ, କେଡ଼େ ନିର୍ମମ ହୃଦୟ ସତେ ।
କ୍ଷମତା ଅନ୍ଧ ପୁତ୍ର ହୃଦୟ ପାଷାଣ ପରି
ରୁକ୍ଷ, କଠିନ, ନ ତରଳେ ତାହା-
ଝରେ ନାହିଁ ତହୁଁ କରୁଣା ବାରି ।
କ୍ଷୁଧା, ତୃଷା, ରୋଗ, ଶୋକର ଜହର ଯନ୍ତଣାରେ
ବିତିଲା ଦୁଃଖ ଅଷ୍ଟ ବରଷ ବନ୍ଦିଶାଳେ ।
ତଥାପି ମୁକ୍ତି ମିଳିଲା ନାହିଁ,
ସବୁ ପ୍ରସ୍ତୁତି ସରିଥିଲା ତାଙ୍କ ମୃତ୍ୟୁ ପାଇଁ ।

ବର୍ଷଣମୁଖୀ ସେ ରାତିଟି ଥିଲା କି ଘନ ଘୋର
ଆକାଶେ ବିଜୁଳି ବଜ୍ର ବାଦଲ କି ଭୟଙ୍କର,
ଚିତ୍କାର କଲେ ବନ୍ଦିବାଦସା
ମମତାଜ ତୁମ ପ୍ରଣୟ ଧାରା
ବର୍ଷଣ ରୂପ ନେଇଛି କି ପ୍ରିୟା !
ନିଷ୍ଠୁର ଏଇ କକ୍ଷକାରା ।
ନେଇ ଯାଅ କୋଳେ ସାଉଁଟି ମୋତେ
ପତଙ୍ଗ ଟିଏ କରିଦିଅ ସଖି,
ଉଡ଼ିଯାଏ ତାଜମହଲ ପଥେ ।
ଅମ୍ବୁଦ କଣା ଆର୍ଦ୍ର ଶୀତଳ ସମୀର ବହେ
ତୃଷାଜର୍ଜର ବାଦସା ବିକଳ ଦାରୁଣ ଦାହେ,
ଚାଟିଲେ ଓଠ,
ଜିଭ ଶୁଖିଗଲା ପାଣି ପାଣି ବୋଲି ଛାଡ଼ି କୁହାଟ
ବାହାରେ ଝରୁଛି ବର୍ଷାଝର,
କାରା କକ୍ଷରେ ସେ ତୃଷାତୁର ।

ସେ ପାଖୁ ଶୁଭିଲା ଘନ ଘନ ଘନ ଅଟ୍ଟହାସ
"ପାଣି ମିଳିବନି, ପାଣି ମିଳିବନି,
କିଛି କ୍ଷଣ ପରେ ଲିଭିବ ଶୋଷ-
ଧୈର୍ଯ୍ୟ ଧର,
ଦିଲ୍ଲୀ ସମ୍ରାଟ ସାହାଜାହାନଙ୍କ ପୁରସ୍କାର ।"
"ତୃଷାର୍ତ୍ତ କେବେ ତୃଷାରେ ମରେନି
ପୁଣ୍ୟ ଭାରତ ଭୂମିରେ ଥାଇ ,
ଆର୍ଯ୍ୟ ବିଧିରେ, ପ୍ରେତ ଲୋକ ପିତୃ ପୁରୁଷ ପାଇଁ-
ସନ୍ତାନ ତା'ର ଜଳଦାନ କରେ
ମୁଁ ଅଟେ ଜୀବିତ ମିଳୁନି ଜଳ ।
ପୁଣ୍ୟ ଧାମକୁ ପାରିବକି ରଖି-
ସମ୍ରାଟ ତୁମ ସେ ପଶୁବଳ ?
ପାଣି ଟୋପେ ଦିଅ, ଟୋପାଏ ପାଣି,
ହାଃ ହାଃ ହାଃ
ମିଳିବନି ତାହା, ତା'ମିଳିବନି ।।

ବି.ଦ୍ର: ଭାରତର ଶେଷ ମୋଗଲ ସମ୍ରାଟ ଆଓରେଙ୍ଗଜେବ ନିଜ ଭାଇମାନଙ୍କୁ ହତ୍ୟା କରି, ପିତା ସାହାଜାହାନ୍‌ଙ୍କୁ ବନ୍ଦୀ କରି ଦିଲ୍ଲୀ ସିଂହାସନ ଖ୍ରୀ.ଅ. ୧୬୫୮ରେ ଅଧିକାର କଲେ ।

୫.୯.୨୦୦୯
ଭୁବନେଶ୍ୱର

# ମହାଦାନୀ କର୍ଣ୍ଣ ଓ ମହାଳୟା

ଯଦୁବଂଶ ରାଜା ଶୁରସେନଙ୍କର
ରାଜବାଳା ଥିଲେ 'ପୃଥା'
ସନ୍ତାନହୀନ ରାଜା 'କୁନ୍ତ ଭୋଜ'
ଅଟନ୍ତି ପାଳକ ପିତା ।
କୁନ୍ତଭୋଜଙ୍କର କନ୍ୟା ବୋଲି 'ପୃଥା'
'କୁନ୍ତୀ' ନାମେ ପରିଚିତ,
ନବୀନା କିଶୋରୀ ବାଳିକା ବୟସେ
କର୍ଣ୍ଣୁ 'କର୍ଣ୍ଣ' କଲେ ଜାତ ।
ଅଭିଚାର ମନ୍ତ୍ର ବଳେ,
ସୂର୍ଯ୍ୟ ଦେବଙ୍କୁ ଆମନ୍ତ୍ରି କୁତୂହଳେ ।

କାନୀନ ପୁତ୍ରକୁ କୋଳେ ଧରି କୁନ୍ତି
ନୟନୁ ଝରାଇ ବାରୀ,
ଦେଖିଲେ ଦିଶୁଛି 'ଶିଶୁ ସୂର୍ଯ୍ୟ' ସମ
କବଚ କୁଣ୍ଡଳ ଧାରୀ ।
ଘନ ଅନ୍ଧକାରେ ପ୍ରକଟଇ ଜ୍ୟୋତି
ଦିଶୁଅଛି ପ୍ରଭାମୟ,
ରଟିବ ଦୁର୍ନାମ ସାରା ରାଇଜରେ
ଗ୍ରାସ କଲା ଲଜ୍ଜାଭୟ ।
ସୋଲ ପେଟିକାରେ ଶଯ୍ୟା ସେ ରଚିଲେ
ଶୁଆଇଲେ ସନ୍ତାନକୁ,
ଗଙ୍ଗାସ୍ରୋତେ ନେଇ ବିସର୍ଜନ କଲେ
ନବଜାତ ଶିଶୁଟିକୁ ।

ଭାସି ଭାସିଗଲା ସେ ସୋଲ ପେଟିକା
ପାହାନ୍ତି ପହରେ ଦୂରେ,
ଢଗିଥାନ୍ତି କିନ୍ତୁ ସୂର୍ଯ୍ୟ ଦେବ ତାକୁ
ସ୍ରୋତେ ଭାସିଗଲା ବେଳେ ।
ପ୍ରତ୍ୟୁଷରୁ ଆସି ସ୍ନାନ କରୁଥାନ୍ତି
'ଅଧିରଥ' ନାମେ ସୂତ,
ସୋଲ ପେଟିକାଟି ଭାସିଗଲା ବେଳେ
ବାଜିଲା ତାଙ୍କର ହାତ ।
ସ୍ରୋତରୁ ସାଉଁଟି ଆଣିଲେ ସାରଥି
ପେଟିକାଟି କୁତୂହଳେ,
ଦେଖିଲେ ଶୋଇଛି ନବଜାତ ଶିଶୁ
ସୋଲ ଫୁଲ ଶେଯ ତଳେ ।
ଆନନ୍ଦେ ନୟନୁ ବହିଲା ଲୋତକ
ତୁଟିଗଲା ଅଭିମାନ,
ସତେ ଗଙ୍ଗାମାତା,ଅପୁତ୍ରିକେ ଆଜି
କରିଛନ୍ତି ପୁତ୍ରଦାନ ।

ବାହୁଡ଼ିଲେ ଘରେ ଶିଶୁଟି ଛାତିରେ
ନିବିଡ଼େ ଜାବୁଡ଼ି ଧରି,
ଡାକ ଛାଡ଼ିଲେ ସେ "ଆଗୋ ରାଧାରାଣୀ,
ଆଗୋ ରାଧାରାଣୀ, ବୋଲି ।
ଦଉଡ଼ି ଆସିଲେ ରାଧା, ଅଧା କାମୁ
କିଆଁ ଏଡ଼େ ମିଠାଡାକ
ସ୍ୱାମୀଦେବ କ'ଣ ଜୟ କରିଛନ୍ତି
ନୂତନ ଗଡ଼ ମୁଲକ ।

କଅଁଳ କଅଁଳା ଛୁଆଟିକୁ ନେଇ
ଟେକି ଦେଲେ ତାଙ୍କ ହାତେ
ଗଙ୍ଗା ମାତାଙ୍କର ଘେନ ଦାନ ସଖି !
ପୂଜିଥିଲ ତାଙ୍କୁ କେତେ
ସନ୍ତାନହୀନ ବୋଲି ଅଭିମାନେ
କାନ୍ଦୁଥିଲେ ଦିବାନିଶି,
ଅପୁତ୍ରିକ ଦୋଷ' କଟିଗଲା ଏବେ
ଶୋକ ଭୁଲି, ହେବା ଖୁସି ।
ବୁକୁରେ ଜଡ଼ାଇ ଶିଶୁଟିକୁ ରାଧା
କଲେ ସ୍ନେହେ ସ୍ତନ୍ୟଦାନ
ଆଖି ପଲକରେ ଝରିଲା ଅମୃତ
ସତେ ଗଙ୍ଗାସ୍ରୋତ ସମ ।
ଦେବ ଶିଶୁଟିକୁ କୋଳେ ଧରି ଦୁହେଁ
ଚାହିଁଲେ ତନ୍ମୟ ହୋଇ,
କବଚ କୁଣ୍ଡଳଧାରୀ ଏ ଶିଶୁଟି
ଅସାମାନ୍ୟ ଗୁଣ ନେଇ-
ଆସିଛି ଜଗତେ, କେଉଁ ଦେବଅଂଶେ
ଜାତ ଅଟେ ଶିଶୁଟିର
କିପରି ହୋଇଲେ କଠୋର ହୃଦୟ
ଜନକ ଜନନୀ ତା'ର ?
ସେଇ ମୁହୂର୍ତ୍ତରେ ଶୁଣିଲେ ସାରଥି
ଶୂନ୍ୟରୁ ଆକାଶ ବାଣୀ,
ସୂର୍ଯ୍ୟଙ୍କ ତନୟ ଅଟନ୍ତି ଏ "ମହା
ବୀର କର୍ଣ୍ଣ, ମହାଦାନୀ ।"
ରାଧାଙ୍କ କୋଳରେ ବଢିଲା ଶିଶୁଟି
ଶୁକ୍ଳପକ୍ଷ ଚାନ୍ଦ ପରି,
ହସ୍ତିନା ସାରଥି ଅଧିରଥ ପୁତ୍ର,
ହେଲେ ରାଜପୁତ୍ର ସରି ।

ଅସ୍ତ୍ରବିଦ୍ୟା, ରଣନୀତି ସେ ଶିଖିଲେ
ରାଜ ପୁତ୍ର ଗଣେ ମିଶି,
ଗୁରୁଦ୍ରୋଣାଚାର୍ଯ୍ୟ ହେଲେ ଅସ୍ତ୍ର ଗୁରୁ
ହେଲେ ବିଶାରଦ ଅସି
ରଣ କଉଶଳେ ଅର୍ଜୁନଙ୍କ ସାଥେ
ସମକକ୍ଷ କେହି ଜଣେ,
ହୋଇପାରିଲେନି, ଏକା କର୍ଣ୍ଣ ଥିଲେ
ସମାନ ଲଢୁଆ ପଣେ ।
ରାଜପୁତ୍ର ଅସ୍ତ୍ର ପ୍ରତିଯୋଗିତାରୁ,
ବଂଚିତ ହେଲେ ସିଏ
'ସେ ରାଜା ନୁହନ୍ତି ସୂତ ପୁତ୍ର ବୋଲି'
କହିଲେ ପାଣ୍ଡବ ରାଏ ।
ମନ ତାଙ୍କ ଗଲା ମରି,
ନିରବରେ ଗୁରୁ ସମର୍ଥନ କଲେ
ସେ'ତ ହୀନ ଜାତ ବୋଲି ।

ଦୁର୍ଯ୍ୟୋଧନ ତହୁଁ ଘୋଷଣା କରିଲେ
'ଅଙ୍ଗ' ରାଜ୍ୟର ଏ'ରାଟ ।
ମହାପରାକ୍ରମୀ କର୍ଣ୍ଣଙ୍କୁ ସଭାରେ
ପିନ୍ଧାଇ ରାଜ ମୁକୁଟ ।
'ଅଙ୍ଗ' ରାଜ୍ୟ
ରାଜପଣ ଲଭି ସେ ଅଟନ୍ତି 'ରାଜା'
ସେ ମୋର ପରମ ସଖା
ଅଶ୍ରୁ ଛଳଛଳ କର୍ଣ୍ଣଙ୍କ ନୟନ
କି ମହାନ୍ ଉଦାରତା !
ମହାଭାରତର ମହାଯୁଦ୍ଧେ ଲଢି
ଥିଲେ କୁରୁ ପକ୍ଷେ ରହି,
ଦୁର୍ଯ୍ୟୋଧନଙ୍କର ଥିଲେ ପ୍ରାଣସଖା
ସମ୍ପଦେ ବିପଦେ ସେହି ।

ମହାବୀର, କର୍ଣ୍ଣ ଥିଲେ ମହାଦାନୀ
ସୁବର୍ଣ୍ଣ କରନ୍ତି ଦାନ,
ହୀରା ନୀଳା ମୋତି ମାଣିକ୍ୟେ ତାଙ୍କର
ନ ଥିଲା ତ ପ୍ରଲୋଭନ ।
ମହାବୀର ମହାଦାନୀ କର୍ଣ୍ଣ ନାମେ
ଜଗତରେ ପରିଚିତ,
ମୃତ୍ୟୁପରେ ହେଲେ ସ୍ୱର୍ଗବାସୀ ସିଏ
ରହି ମହାନନ୍ଦେ ନିତ୍ୟ ।
ଫଳ ଲାଭ ଆଶା ନରଖି ଜୀବନେ
ଦେଇଥିଲେ ଯେଉଁ ଦାନ,
ସ୍ୱର୍ଗେ ତାଙ୍କୁ ତାହା ଫେରସ୍ତ ମିଳିଲା
ହୋଇ ତହିଁ ଶତଗୁଣ ।

କ୍ଷୁଧାରେ ହୋଇଲା ଆକୁଳ ଅନ୍ତର
ମିଳିଲାନି ତାଙ୍କୁ ଖାଦ୍ୟ
ସ୍ୱର୍ଣ୍ଣ ମୁଦ୍ରା ଭରା ଥାଳି ପରଷିଲେ
ଆଣି,ତାଙ୍କୁ ଯମ ଦୂତ ।
ପଚାରିଲେ ସିଏ ଯମଦେବତାଙ୍କୁ
ଏକି କଲେ ଯମ ରାଜ
ଖାଦ୍ୟ ବଦଳରେ ସ୍ୱର୍ଣ୍ଣ ମୁଦ୍ରା କ'ଣ
ହୋଇ ପାରିବକି ଭୋଜ୍ୟ ?
ଯମରାଜ ହସି କହିଲେ, "ହେ ବୀର
ଏଡ଼େ ଦାନୀ ହୋଇ ଭବେ,
ଦୁଃଖୀ ଦରିଦ୍ରରେ ଅନ୍ନ ଜଳ ଦାନ
କରିନାହାନ୍ତି ତ କେବେ ।
ମିଳିବ କିପରି ଏଥି,
ଯାହା ଦେଇଛନ୍ତି ତାହା ତ ମିଳିଲା
ସନ୍ତୁଷ୍ଟ ହୁଅନ୍ତୁ ରଥି ।

ହେ ଯମ ଦେବତା । ମୋର ଦାନ ଯଜ୍ଞ
ପୂରଣ କରିବା ପାଇଁ
ମର୍ତ୍ତ୍ୟପୁରକୁ ଏକ ପକ୍ଷ ପାଇଁ
ଦିଅ ତେବେ ବାହୁଡ଼ାଇ ।
ଯମ ରାଜି ହେଲେ, ବାହୁଡ଼ି ଆସିଲେ,
ମହାଦାନୀ କର୍ଣ୍ଣ ପୁଣି
ଅନ୍ନ ଜଳ ଦାନେ ତୋଷି ସର୍ବଜନେ
ତୃପ୍ତ କଲେ ସର୍ବ ପ୍ରାଣୀ ।
ପକ୍ଷ ପୂରିଗଲା ଯମଙ୍କ ଆଦେଶେ
ସ୍ୱର୍ଗକୁ ଆସିଲେ ଫେରି,
ସ୍ୱର୍ଗଲୋକେ ତାଙ୍କୁ ମିଳିଲା ସୁସ୍ୱାଦୁ -
ଖାଦ୍ୟ, ଗଲା ପେଟ ପୂରି ।

ଯେଉଁ ପକ୍ଷେ କର୍ଣ୍ଣ ସ୍ୱର୍ଗୁ ଫେରି ଯାଇ
କରିଥିଲେ ମର୍ତ୍ତ୍ୟେ ବାସ
ପିତୃପକ୍ଷ ରୂପେ ପାଳିତ ହେଉଛି,
ପକ୍ଷ ହୋଇଗଲେ ଶେଷ -
ଆସେ ମହାଳୟା ତିଥି,
ଅନ୍ନଦାନ ଯଜ୍ଞ ପରେ ବାହୁଡ଼ନ୍ତି
ସ୍ୱର୍ଗବାସେ ମହାରଥୀ ।
ଶ୍ରାଦ୍ଧ ପରମ୍ପରା ପାଳେ ଶ୍ରଦ୍ଧାର୍ପିତ ମନ
ତିଳ ତରପଣ ଅନ୍ନ ନଇବେଦ୍ୟ କରାଯାଏ ତହିଁ ଦାନ ।

୧୮/୯/୨୦୦୯
ଭୁବନେଶ୍ୱର

# ଅହଂକାରୀ ବାବା

ବଦର୍ଗ ଚାଇକେ ଥିଲେ ଜଣେ ସାଧୁ
ନାମ ତାଙ୍କ ଘୁଙ୍ଗା ବାବା
ନଦୀ କୂଳେ ଏକ ଆଶ୍ରମ ରଚି ସେ
ତହିଁ ହୋଇଥିଲେ ଉଭା ।

ଭଜନ କୀର୍ତ୍ତନ ନାମ ସୁମରଣା
କରି କାଟୁଥିଲେ କାଳ,
ଭକତ ଜନଙ୍କ ଦାନ ଦକ୍ଷିଣାରେ
ଭରୁଥିଲା ତାଙ୍କ ଥାଳ ।
ନ ଥିଲା ଅଭାବ କେବେ,
କହୁଥିଲେ ଶତ ବିପଦ ଟଳିବ
ପ୍ରଭୁ ଦୟାଥିବ ଯେବେ ।

ଦିନେ ଭୟଙ୍କର ବରଷା ହୋଇଲା
ଟୁଳୁ ଟୁଳୁ ହେଲା ନଈ,
ଆଶ୍ରମ ତାଙ୍କର ଭାସି ଯିବ ନିଶ୍ଚେ
ଉଛୁଳିଲେ କୂଳ ଖାଇ ।

ଲୋକମାନେ ଆସି କହିଲେ,ବାବାହେ !
ଆଶ୍ରମୁ ବାହାରି ଆସ,
ନିରାପଦ ଜାଗା ଖୋଜିନିଅ ବେଗେ
ବଢୁଛି ମେଘ ବତାସ ।
ବାବାଏ କହିଲେ 'ଚିନ୍ତାକରନାହିଁ
ଦୀନବନ୍ଧୁ ଯା'ର ବନ୍ଧୁ,
ଏ ଛାର ନଈଟା କି କରିପାରିବ
ତରି ରହିଅଛି ସିନ୍ଧୁ ।

ନଈ ଘୁଞ୍ଚିଯିବ ଦୂରକୁ ଦୂରକୁ
ଆଶ୍ରମ ନହେବ କ୍ଷତି,
ମାଁ ଆସିଲେ ସେ ଅଟକାଇ ଦେବି
ନ ଲଘିବ ଦୁଷ୍ଟ ମତି ।

ଚାହୁଁ ଚାହୁଁ ନଈ କୂଳ ଉଛୁଳିଲା
ଭାଙ୍ଗିଲା ଉପରେ ଘାଇ,
ପ୍ରଖର ସୁଅରେ ଭାସିଗଲା ପୀଠ
ଚିହ୍ନ ବର୍ଣ୍ଣ କିଛି ନାହିଁ ।

ଚଢିଗଲେ ସାଧୁ ଗଛ ଉପରକୁ
ବିକଳେ ଡ଼ାକିଲେ ହରି,
ଦୂରରୁ ଦିଶିଲା ସେଇବାଟଦେଇ
ଭାସି ଆସେ ଏକ ତରୀ ।

ସାଧୁଏ କହିଲେ ଓହ୍ଲାଇବିନି ମୁଁ
ଠାକୁରେ ରଖିବେ ମୋତେ,
ଗଛମୂଳେ ଆସି ତରୀ ପହଞ୍ଚିଲା
ବହିଗଲା ପୁଣି ସ୍ରୋତେ ।

ଡ଼ଙ୍ଗା ଚାଲିଗଲା ଦୂରକୁ ଦୂରକୁ
ଭାସି ଆସି ଏକ ଚାଳ,
ଅଟକିଲା ତହିଁ,ସାଧୁ ଆସିଲେନି
ଅଛି ମୋ ଧରମ ବଳ ।
କହି,ଦମ୍ଭ ଧରି ଗଛ ଅନୁସରି
ଡ଼ାଳରେ ବସିଲେ ଯାଇ,
ଗଛ ଉପୁଡ଼ିଲା ସୁଅରେ ପଡ଼ିଲା
ଚେର ମୂଳ ଗଲା ଖାଇ ।

ଗଛର ଚାପରେ ଚାପି ହୋଇଗଲେ
ନଈର ଗଭୀର ଗଣ୍ଡେ
ଘୁଙ୍ଗା ବାବାଙ୍କର ସଲିଳ ସମାଧି
ହୋଇଗଲା କାଳ ଦଣ୍ଡେ ।

ଭାବିଥିଲେ ମନେ ଭକତ ବତ୍ସଳ
ଆପେ ଆସିହେବେ ଉଭା,
ହାତ ଧରି ନେଇ ମଣ୍ଡନ କରିବେ
ତାଙ୍କର ସେ ଦେବସଭା ।

ଉଦ୍ଧାରିବା ପାଇଁ ପ୍ରଭୁଙ୍କ ସାହାଯ୍ୟ-
ମିଳିଥିଲା କାଳ ସ୍ରୋତେ,
ଧର୍ମବଳ ଅଛି, ହେବନାହିଁ କିଛି
ଆଡ଼େଇ ଦେଲେ ସେ ହାତେ ।
ସର୍ବନାଶ ନେଲେ ବରି,
ମନେ ଅହଂକାର ଭରି ।

୪/୧୧/୦୯
ଭୁବନେଶ୍ୱର

# ଗୋସାଇଁଙ୍କ ଗୋରୁବିକା

ବ୍ରାହ୍ମଣ ଗୋସାଇଁ ଜଣେ, ଥିଲେ ଧର୍ମ ଭୀରୁ
ଅନ୍ୟାୟର ଛାଇ ମାଡୁନଥିଲେ ଭୟରୁ,
ସେ'ଥିଲେ ଅଭାବ ମଧ୍ୟେ, ନଥିଲା ସମ୍ବଳ
ଦୁଧିଆଳୀ ଗାଈଟିଏ, ଥିଲା ତାଙ୍କ ବଳ ।

ତଥାପି ଅଭାବେ ପଡି ବିକିବାକୁ ଗଲେ
ସ୍ତ୍ରୀଙ୍କ ବାରଣ, ବିପ୍ର ଭ୍ରୂକ୍ଷେପ ନ କଲେ,
କାନ୍ଦି କାନ୍ଦି ବିଦା ଦେଲେ ଗାଈକୁ ବ୍ରାହ୍ମଣୀ
ଅମଙ୍ଗ ହୋଇଲା ଗାଈ, ଗୋଠୁ ସେ ଯିବନି ।

ପଘା ଧରି ମାଡ଼ ମାରି, ନେଇ ଗଲେ ତାକୁ
ବାନ୍ଧି ରଖିଲେ ଗୁହାଳେ ମାଈ ବାଛୁରୀକୁ,
ଗୁହାଳ ଫଟାଉ ଥାଏ, ତୋଳି ହମା ରଡ଼ି
ମା' ତା' ହମ୍ବାଳୁ ଥାଏ ହମ୍ବା ରଡ଼ି ଛାଡ଼ି ।

ବ୍ରାହ୍ମଣୀ, ବାଛୁରୀଟିକୁ କୋଳରେ ପୂରାଇ
ଆଉଁଶୁ ଥାଆନ୍ତି ତାକୁ ବୁକୁରେ ଜଡ଼ାଇ,
ପଡୁଥାଏ ତା'ଉପରେ ଥପ୍ ଥପ୍ ଲୁହ
ଡାକୁଥାନ୍ତି ଠାକୁରଙ୍କୁ ନ ସମ୍ଭାଳି କୋହ ।

ପ୍ରଭୁ ହେ । ଗାଈ ଟି ମୋର ନ କିଣନ୍ତୁ କେହି
ମୋ ଗୁହାଳେ ଫେରୁଆସୁ ମୋର ଲକ୍ଷ୍ମୀଦେଇ ।

ଖିରୀ, ପୁଳୀ, ଦୁଧ, ଦହି, ଛେନା ଲବଣିରେ
ଭରିବି ମୁଁ ଭୋଗ ଥାଳ ବାଢ଼ିବି ପୂଜାରେ ।
ପ୍ରଭୁ, କର ହେ କରୁଣା !
ଆରତ ନାଶନ ବୋଲି ଉଡ଼େ ତୁମ ବାନା ।

ଏ ପାଖେ ବ୍ରାହ୍ମଣ ହାଟେ ଗାଈଟିକୁ ଧରି
ବସି ଥାନ୍ତି ଗ୍ରାହକର ପଥ ଅନୁସରି,
ସେଇ ବାଟଦେଇକେତେ ଯାଆନ୍ତି ଗ୍ରାହକ
କେ ଚାହାନ୍ତି ନାହିଁ, ସର୍ବେ ଅଟନ୍ତି ବିମୁଖ ।
ଭାବନ୍ତି ଅଟଇ ଏତ, ମୃତବତ୍ସା ଗାଈ
ହମ୍ବାଳି ହେଉଛି ତାର ଛୁଆକୁ ହରାଇ ।

'ଗରଜ ପଡ଼ିଛି ବୋଲି ବିକୁଛି ଗାଈକୁ
ପ୍ରଭୁ ହେ ସହାୟ ହୁଅ ଋଣ ସୁଝିବାକୁ,
ଉଭା ହେଲେ ଆସି ପାଶେ ଗ୍ରାହକ ଈଶ୍ୱର
ଏ ମଡ଼ଛୀ ଗାଈ କେତେ ବୟସ ତାହାର ?

ବ୍ରାହ୍ମଣ କହିଲେ, 'ଭାଇ ନୁହେଁ ଏ' ଜରତୀ
ଅନେକ ଦିନରୁ ତାକୁ ରଖିଛି ସାଇତି,
'ମଡ଼ଛୀ ନୁହେଁ ଏ ଗାଈ, ଅଛି ତା' ବାଛୁରୀ
ଗୁହାଳଟା କରିବିନି ବୋଲି ଶୁନ୍ୟପୁରୀ
ଆଣିନି ହାଟକୁ,
ଗାଈକୁ ବିକୁଛି ଏକା, ଋଣ ସୁଝିବାକୁ ।
ସେ କହିଲେ, "ଏ' ଗାଈକୁ ନିଅ ହେ ଫେରାଇ
ମା' ଠାରୁ ଛୁଆଟିକୁ ରଖିଛ ଛଡ଼ାଇ ?

ବ୍ରାହ୍ମଣ ହୋଇ କରିଲ କେଡ଼େ ମହାପାପ
ଗାଈ ସୁଝିଦେବ ନିଶ୍ଚେ କରଜ ଯେତେକ,
ରଖନେଇ ଘରେ,
ମନେ ପକାଇବ ଭାଇ ମୋତେ ସେତେବେଳେ ।
ଗାଈ କେବେ ରହେ ନାହିଁ କାହାଠାରେ ଋଣୀ
ତୁମ ଋଣ ସୁଝିଦେବ ତା' କ୍ଷୀର ଲବଣି,
ସେ ତୁମକୁ କରିଦେବ ତା' ପାଖେ ଋଣିଆ
ତା' ସେବା କରହେ ସେତ ମହାନ କୁଣିଆ
ଦିଅ ନାହିଁ ତଡ଼ି,
ଗାଈ ବିନା ଦିଅ ନାହିଁ,ଗୁହାଳ ଉଜାଡ଼ି ।"

ଏତିକିରେ ବ୍ରାହ୍ମଣଙ୍କ ମନ ହେଲା ତୋଷ
ବାହୁଡ଼ିଲେ ସେ ହାଟରୁ ହୋଇଣ ହରଷ,
ବାଟରେ ଫିଟାଇ ଦେଲେ ବେକରୁ ତା' ପଘା
ଏକ ଲୟେ ଦଉଡ଼ିଲା ନରଖି ସେ ନିଘା
ତା' ପଛରେ ନ ପାରି ଗୋଡ଼ାଇ ,
ବାହୁଡ଼ି ଆସିଲେ ନନା, ଖରା ଖାଇ ଖାଇ ।

ଗାଁ ଦାଣ୍ଡେ ହମ୍ବାରଡ଼ି ପକାଇଲା ହୁରି
ହମା ହମା ରଡ଼ିଛାଡ଼େ ତା' କୁନି ବାଛୁରୀ,
ବ୍ରାହ୍ମଣୀ ରୋଷେଇ ଘରୁ ତର ତର ହୋଇ
ବାହାରି ଆସିଲେ ଦାଣ୍ଡେ, 'ପ୍ରଭୁ' ଡାକ ଦେଇ
ହୋଇଗଲେ ଖୁସି ।
ଗାଈଟିର ବେକସନ୍ଧା ଦେଲେ ସେ ଆଉଁଶି

ବାଛୁରୀକୁ ଚାଟି ଗାଈ କରିଲା ଆଦର
ବାଛୁରୀ ତା ଲାଞ୍ଜ ଟେକି ପିଏ କ୍ଷୀର ତା'ର
ବ୍ରାହ୍ମଣୀ କୁଣ୍ଡା ତୋରାଣି ଆଣି ବାଲଟିଏ
ଥୋଇ ଦେଲେ ଖାଇବାକୁ ସ୍ନେହେ ଗାଈ ମୁହେଁ ।

ସୁଡ଼ିକି ଦେଲା ସେ ସବୁ ଆଖିପିଛୁଳାକେ
ଗୁହାଳେ ପଡ଼ିଲା ଶୋଇ ତା' ବାଛୁରୀ ପାଖେ,
ବ୍ରାହ୍ମଣ ପହଞ୍ଚି ଘରେ ହୋଇଲେ ଆଶ୍ୱସ୍ତ
ଗାଈକୁ ଦେଖି ଗୁହାଳେ ହେଲେ ହରଷିତ ।
ବ୍ରାହ୍ମଣୀଙ୍କ ସବୁ ଦୁଃଖ ଗଲା ଅପସରି,
ସତେ ବା ଠାକୁର ତାଙ୍କ ଶୁଣିଲେ ଗୁହାରି ।

ବି.ଦ୍ର : ଜରଠୀ ... ବୃଦ୍ଧା, ମଡ଼ଛୀ –ମୃତବସ୍ଥା

୧୪/୧୧/୨୦୦୯
ଅନଗୁଳ

# କ୍ରୋଧୀର ମହାଦାନ

ଦିନେ ଏକ ଗ୍ରାମେ ସ୍ୱାମୀ ସ୍ତ୍ରୀ ମଧ୍ୟେ
ଚାଲିଥାଏ ହଟଗୋଳ
ଯୁକ୍ତିତର୍କ ଥିଲା ଅତି ଜୁଆରିଆ
ଦୁହେଁ ଅତି ଅସମ୍ଭାଳ ।

ଯୁକ୍ତି ପ୍ରତିଯୁକ୍ତି, ଉକ୍ତି ପ୍ରତିଉକ୍ତି
ବିରାମ ଟିକିଏ ନାହିଁ,
ପଦକ ଉପରେ ପଦେ ପଡୁଅଛି
କ୍ରୋଧେ ବେନି ଜନ ବାଇ ।

ବଡ଼ ସାନ ମାନ କିଏ ଅଟେ ମାନ୍ୟ
ବିଚାର ନଥାଏ କିଛି,
ଦୁହିଁଙ୍କ ଭିତରେ ବଳ କଷାକଷି
କେ'ଜିତୁଛି କେ'ହାରୁଛି ।

ଏତେ ବେଳେ କାହୁଁ ସାଧୁ ଜଣେ ଆସି
ପ୍ରବେଶ ହୋଇଲେ ତହିଁ
ଡାକ ଦେଲେ, 'ଭିକ୍ଷା ଦିଅ ମୋ ଥାଳରେ
ମଙ୍ଗଳ କରିବେ ସାଇଁ ।
ନ ଶୁଣିଲେ କେହି ଡାକ,
କଳିତକରାଳେ ମାତିଛନ୍ତି ଦୁହେଁ
କିଏ ଅବା ଦେବ ଭିକ !

ରାଗ ତମ ତମ ହୋଇ ସେହି ନାରୀ
ଗୃହରୁ ବାହାରି ଗଲେ,
ସାଧୁଙ୍କୁ ଦୁଆରେ ଦେଖି ରାଗ ତକ
ଝାଡ଼ିଝୁଡ଼ି ଦେଲେ ଥାଳେ ।
"ବାବାଜି ସାଜିଛ ତମେ ଠକଦଳ
ପିନ୍ଧିଏ ବସନ ଗେରୁ
ଭଲ ଦଶା ଥିଲେ ଭଲେ ଭଲେ ତୁମେ
ବାହାରି ଯାଅ ଏ ଠାରୁ ।
କିଛି ମିଳିବନି ଯାଅ ଚାଲି ଏଠୁ
ରଗାଅନି ମୋତେ ଆଉ,
କାମ କରିଖାଅ କରମ କୁଢ଼ିଆ
ସାଧୁ ବେଶ ତମ ଥାଉ ।

ସାଧୁଏ କହିଲେ, "ହତାଶରେ କେବେ
ଖାଲି ଫେରି ନାହିଁ ଥାଳ
ଯାହା  ଦେବେ ତାହା ଗ୍ରହଣ କରିବି
ମୋ ପାଇଁ ତାହା ଅମୂଲ୍ୟ ।"

ହାତେ ଧରିଥିଲେ ପୋଛା କନାଟାଏ
ଲାଗିଥିଲା କଳାଚିଟ,
ଫୋପାଡ଼ିଲେ ରାଗେ ଥାଳକୁ ତାଙ୍କର
ଆଖି କରି କଟମଟ ।

କନାଖଣ୍ଡ ପାଇ ମହା ଆନନ୍ଦରେ
ଆଶୀର୍ବାଦ ଦେଇ ସାଧୁ
ଚାଲିଗଲେ ତହୁଁ, କ୍ରୋଧ ହେଲା ଦୂର
ମନ ପାଲଟିଲା ମଧୁ ।
ସ୍ୱାମୀଙ୍କ ମୁହଁକୁ ଚାହିଁ ହସିଦେଲେ
ଶରଧାରେ ହାତ ଟାଣି,
ନେଇ ବସାଇଲେ ଠାଆ ପିଢା ପରେ
ପରଷିଲେ ଖାଦ୍ୟ ଆଣି ।
ପାଖରେ ବସିଲେ ବିଛଣାଟି ଧରି
କହିଲେ ମରମ କଥା,
ତୁମକୁ ଝିଙ୍ଗାସି ସାଧୁଙ୍କୁ ଧିକ୍କାରି
କ୍ରୋଧେ ବଢ଼ାଇଛି କଥା
ମୁଁ ଅଟେ ପାପିନୀ ନାରୀ,
ଯାହା ଘଟିଥିଲା ସବୁ କଥାତକ
କହି, ମନ ଦେଲେ ଝାଡ଼ି ।

ସ୍ୱାମୀ ସ୍ତ୍ରୀ ଦୁହେଁ ବାହାର ହୋଇଲେ
ଅନୁସରି ତାଙ୍କ ପଥ,
ଗାଁ ଦେଉଳରେ ଅଛନ୍ତି ସାଧୁଏ
ଶୁଣି ହେଲେ ଉଲ୍ଲସିତ ।

ଦୁହେଁ ଯାକ ଯାଇ ଭେଟିଲେ ସାଧୁଙ୍କୁ
ସାଷ୍ଟଙ୍ଗ ପ୍ରଣାମ କରି,
କ୍ଷମ କ୍ଷମାଶୀଳ କରିଛୁ, ଯେ' ପାପ
ମୁକ୍ତକର, ପରିହରି ।

ଗମ୍ଭୀର ମଧୁର ସସ୍ମିତ ବଚନେ
ପ୍ରବୋଧି କହିଲେ ସାଧୁ,
ତୁମ ଭିକ୍ଷା ପାଇ କନାଟିକୁ ଧୋଇ
ସଳିତା କରିଛି, ବଧୂ !
ଠାକୁରଙ୍କ ଠାରେ କରୁଅଛି ଦୀପଦାନ,
ଏ'ଦାନଠୁ ବଳି ଆଉ କିଛି ଅଛି
ମହାଦାନ, ମୂଲ୍ୟବାନ !
ଆଶିଷ ଦେଉଛି ତୁମେ,
ସୁସ୍ଥ ବୁଝାମଣା ରହୁ ବେନି ମଧ୍ୟେ
କୀର୍ତ୍ତି ରଖ ମର୍ତ୍ତ୍ୟ ଧାମେ ।

ତା ୧୭/୧୧/୦୯
ଅନୁଗୁଳ

# ବିଚାର ବିଭ୍ରାଟ

ରାସ୍ତାକଡ଼େ, ଥିଲା ଏକ କୂପ
ସେ କୂପଟି ଖୋଲା ଥିଲା, ପାଣି ଥିଲା -
ତହିଁରେ ଅଳପ ।

ଦିନେ ସନ୍ଧ୍ୟା ବେଳେ ସେଇ
ପଥ ମଧ୍ୟ ଦେଇ,
ଯାଉଥିଲା ଏକାଏକା
ଗୋଟିଏ ବାଟୋଇ-
ଅନ୍ଧାରରେ ପାରିଲାନି ଦେଖି,
କୂଅରେ ପଡ଼ିଲା ଖସି
ନଥିଲେ କେ ସାଥୀ ।

'ରକ୍ଷାକର' 'ରକ୍ଷାକର' ବୋଲି ଦେଲା ଡ଼ାକ
ନିର୍ଜନ ରାସ୍ତାରେ ତହିଁ କିଏ ବା ଶୁଣିବ !
ଶୁଭିଲା ଦୂରରୁ କା'ର ବୁଦ୍ଧ ଶୁଦ୍ଧ ବାଣୀ
କହନ୍ତି ଗମ୍ଭୀରେ "ବୁଦ୍ଧଂ ଶରଣ ଗଚ୍ଛାମି ।"
ଡାକ ଶୁଣି ଅଟକିଲେ ତହିଁ,
ଲୋକଟି କହିଲା, "ମୋତେ ରକ୍ଷା କର ସାଇଁ ।
ଅନ୍ଧକାର କୂପେ ପଡ଼ି ହୁଏ ଛଟ ପଟ,
ରକ୍ଷାକର ଦାନ କରି କରୁଣା ଆଲୋକ ।"

ସ୍ମରଣ କର ହେ ବନ୍ଧୁ
ପ୍ରବୁଦ୍ଧ ବୁଦ୍ଧଙ୍କୁ,
ଆଲୋକିତ କରିବେ ସେ
ତୁମ ଅନ୍ତରକୁ ।
ପ୍ରାଣର ଆଲୋକେ ପଥ
ହେବ ଉଦ୍ଭାସିତ,
ଅନ୍ଧକାର କୂପ ମଧ୍ଯ,
ପଥ ତୁମ, ହେବ ଆଲୋକିତ;
ସେ ପଥରେ ଆସିବ ବାହାରି
କରୁଣାର ଶକ୍ତ ରଜ୍ଜୁ ଧରି ।

କିଛି କ୍ଷଣେ ପରେ କୂପେ-
ଶୁଣିଲା ସେ, ଭଜନ ସଂଗୀତ,
କିଏ ଜଣେ ଆସୁଛନ୍ତି
ଦୟାମୟ ପରମ ଭକତ ।
ଅଟକି ଗଲେ ସେ' ତହିଁ-
କୂପେ ନେତ୍ର ପାତେ,
ଜାଣିଲେ ଲୋକଟି ତହିଁ
ପଡ଼ିଛି ସଂକଟେ ।
କହିଲା ସେ ବିକଳରେ,
'ମୋତେ ରକ୍ଷା କର',
କହିଲେ ପଥିକ, ତୁମେ
ଭୋଗ କର୍ମଫଳ ।
ପୂର୍ବଜନ୍ମ କୃତକର୍ମ
କେ ପାରିବ ଏଡ଼ି ?
ବିପଦୁ ପାଅ ହେ ରକ୍ଷା
ପୁଣ୍ୟ କର୍ମ କରି ।

ନିଜ ଭାଗ୍ୟ ଭୁଞ୍ଜିବ ଆପଣେ
ତାଙ୍କ ବିନା କେ ତାରିବ
ଦୁଃଖ ଆଉ ଜଣେ ।
ସାହାଯ୍ୟ ମିଳିଲା ନାହିଁ
କାହାଠାରୁ ତାକୁ,
କାନ୍ଦିଲା ସେ କୂଅ ମଧ୍ୟେ
ନିନ୍ଦି ତା' ଭାଗ୍ୟକୁ ।

ଏତେବେଳେ ସେ ପଥରେ
ସାଧୁ ବ୍ୟକ୍ତି ଜଣେ,
ଯାଉଥିଲେ ଅଟକିଲେ,
କାନ୍ଦେ କି କାରଣେ !
କିଏ ବୋଧେ ପଡ଼ିଛି ବିପଦେ,
ଅନାଇଲେ ସେଇ କୂପ ମଧ୍ୟେ ।
ଲୋକଟିଏ ପଡ଼ି, କହେ
ରକ୍ଷା କର ବୋଲି,
କହିଲେ ଆସୁଛି ମୁହିଁ
ଲୋକଙ୍କୁ ହକାରି ।
ପାରିବିନି ଟାଣି
ହାତ ଦେଲେ ହାତୀ ଉଠେ
ଆସିବି ଏ କ୍ଷଣି ।

ତାଙ୍କ ପରେ ପହଞ୍ଚିଲେ ଆଉଜଣେ ଲୋକ
ତାଙ୍କଠାରେ ଥିଲା ଶକ୍ତି ସାହାସ ଅମାପ ।

ସେ ଖୋଲିଲେ ଦଉଡ଼ିକୁ ଧରିଥିଲେ ହାତେ,
ଘର ପାଇଁ କିଣିଥିଲେ,ବାନ୍ଧିଲେ ଶକଟେ ।
ଉପରୁ ଛାଡ଼ିଲେ ତଳେ, ଆସିଲେ ସେ ଉଠି,
ଆନନ୍ଦେ କୁଣ୍ଢାଇ ତାଙ୍କୁ ତଳେ ଗଲେ ଲୋଟି ।
ଏତେବେଳେ ଉପଗତ ହେଲେ ଗାଁ ଲୋକ
ପାଞ୍ଚିଲେ ସରବେ ମିଶି, ସେ ଉପାୟ ଏକ ।
ଘୋଡ଼ଣିରେ କୂଅ ମୁହଁ ଦେଲେ ସେ ଘୋଡ଼ାଇ,
ବିପଦ ଆଶଙ୍କା ଏବେ ଦୂର ହେଲା ତହିଁ ।

ଅନଗୁଳ
୧୮।୧୧।୨୦୦୯

# ଏହାହିଁ ଜୀବନ

ଗାଁ ଟିଏ ଥିଲା, ପାଶେ
ନଈ ଏକ ବହିଯାଏ ଅତି ନିକଟରେ,
ସେ ଗାଁର ପିଲାମାନେ -
ନିତି ନିତି ଆସି ତହିଁ, ଖେଳନ୍ତି କୂଳରେ ।

ଦିନେ ପିଲାଟିଏ ବସି ଦେଖୁଥିଲା ଅସ୍ତସୂର୍ଯ୍ୟ ଶୋଭା
କୂଳଛୁଆଁ ସ୍ରୋତେ ରଖି ଗୋଡ଼ ତାର -
ଜଳ ପରେ, ଝଲମଲ ରକ୍ତ ଢେଉ ଆଭା ।
ହଠାତ୍ କୁମ୍ଭୀର ଏକ ଲାଗିଲା କୂଳରେ
ଆପାଦ ମସ୍ତକ ତା'ର ଆବୃତ ଜାଲରେ ।
କାନ୍ଦି କାନ୍ଦି କହିଲା ପିଲାକୁ,
'ମରଣ ମୁଖରୁ ମୋତେ ରକ୍ଷାକର ବାବୁ ।

ପିଲାଟି କହିଲା ହସି, "ତୁମେ ପରା ମଣିଷକୁ ଖାଅ,
ବଞ୍ଚାଇବିନି ତୁମକୁ, ଖାଇଦେବ ବୋଲି ହୁଏ ଭୟ ।"
କୁମ୍ଭୀର କହିଲା ବାବୁ, "କର୍ଣ୍ଣ ମୋର ଶୁଣିଲା କି କଥା
ମୁଁ ହୋଇବି ଋଣୀ ତୁମ, ତୁମେ ମୋର ଅଟ ରକ୍ଷାକର୍ତ୍ତା ।
ପାରୁନ କି ବୁଝି !
ତୁମ ଋଣ ଏ 'ଜୀବନେ ପାରିବିନି ସୁଝି ।"

ତରଳି ପଡ଼ିଲା ତହୁଁ ବାଳକର ମନ
ବିପଦୁ ତାରିବା ଅଟେ ମଣିଷର କାମ,

ପାଖରେ ନଥିଲା ଛୁରି ଦାନ୍ତରେ କାଟିଲା,
ଛୋଟ କଣା ମଧ ଦେଇ, କୁମ୍ଭୀରର ମୁଣ୍ଡ ବାହାରିଲା ।
ଆଁ କରି କାମୁଡ଼ିଲା ବାଳକର ଗୋଡ,
ଆଶ୍ଚର୍ଯ୍ୟେ କହିଲା ପିଲା, 'କି କଲୁ କୁମ୍ଭୀର ?
ତୁ ଅଟୁ କୃତଘ୍ନ, ପାପୀ, ପାମର ଅନ୍ୟାୟୀ,
ମିଥ୍ୟାବାଦୀ, ରଖିଲୁନି ନିଜ କଥା ତୁହି ।
କି କଲୁ କି କଲୁ !
ଯେ ତୋ'ର ରକ୍ଷାକର୍ତ୍ତା, ତାକୁ କାମୁଡ଼ିଲୁ !'

କୁମ୍ଭୀର କହିଲା ତାକୁ, 'କରିନି ଅଧର୍ମ,
ପାଳିଛି ମୁଁ ସଂସାରର ଆଚରିତ କର୍ମ ।
ଅନ୍ୟାୟ ଅସତ୍ୟ, ପାପ, କୃତଘ୍ନତା ବଳେ
ସ୍ୱାର୍ଥର' ସେ ରାହୁ ଚକ୍ରେ,ଏ ସଂସାର ଚଳେ-
ଏହା ଅଟେ ସଂସାରର ନୀତି,
ଏହା ମଧ ଜୀବନର ଗତି
କରିନି ଅନୀତି ।

ପକ୍ଷୀଟିଏ ଡାଳେ ବସି ଶୁଣୁଥିଲା ତାହା
କହିଲା, "କୁମ୍ଭୀର କହେ ସତକଥା ଯାହା ।
ଭୋଗୁଛି ମୁଁ ଦଶା,
ସମସ୍ତଙ୍କୁ ଡରି ମୁହିଁ, ଗଛ ଊର୍ଦ୍ଧ୍ୱେ କରିଛି ମୋ' ବସା ।
ପଶନ୍ତି ନୀଡ଼ରେ ମୋର, ସାପ ଆଉ କୁଆ
ଖାଇ ଦିଅନ୍ତି ମୋ'ଅଣ୍ଡା, କୁନି କୁନି ଛୁଆ ।
ସବଳ ଦୁର୍ବଳ ପରେ କରେ ଅତ୍ୟାଚାର,
ଖାଦକ ଖାଇବ ଟାଣି ନିଷ୍ଠେ ତା' ଶିକାର ।

ନାହିଁ କିଛି ଅନ୍ୟାୟ ଏଥିରେ ,
ଏ ସଂସାର ମିଥ୍ୟା ଆଉ ଶଠତାରେ ଚଳେ ।
ଏହା ଅଟେ ସଂସାରର ନୀତି,
ଏହା ମଧ୍ୟ ଜୀବନର ଗତି ।"

ଗଧଟିଏ ଚରୁଥିଲା ସେ ନଦୀ କୂଳରେ
ଡାକିଲା ପାଖକୁ ପିଲା ଅତି ବିକଳରେ ।
କହିଲା "ମରଣ ମୁଖୁ ବଞ୍ଚାଇଲି ତାକୁ
ସେ କୃତଘ୍ନ ଭିଡ଼ିଅଛି ମୋତେ ଗିଳିବାକୁ ।
କୁହ ତାକୁ ଭାଇ,
ମୋତେ ଶୀଘ୍ର ଛାଡ଼ିଦେବା ପାଇଁ ।
ଏ' ଅନ୍ୟାୟ ଭାର,
ସହିବନି ଧର୍ମ କେବେ, ଧର୍ମେ ଚଳେ ଏ ବିଶ୍ୱ ସଂସାର ।"

ଗର୍ଦ୍ଦଭ କହିଲା, "ବାବୁ !
ଏ ସଂସାର ସତ୍ୟେ ଚଳୁନାହିଁ,
ଅନ୍ୟାୟ, ଦୁଷ୍କୃତି, ପାପେ,
ଶଠତାରେ ସଂସାର ଚଳଇ ।
ମଇଳା ଲୁଗା ଚୁଠକୁ
ବୋହି ବୋହି ପିଠି ହେଲା କୁଜ
ବୁଢା ହୋଇଗଲି ବୋଲି
ମୋ ମାଲିକ ତଡ଼ି ଦେଲା ଆଜ ।
ମୋ' ସେବା ପାଇଲା ସିଏ
ମନଭରି ତା' ସାରା ଜୀବନ
ତା' ଘରୁ ଘଉଡ଼ି ମୋତେ
ପରିଶୋଧ କଲା କ'ଣ ରଣ !

ତା'ପରେ କୋକିଶିଆଳ ପହଞ୍ଚିଲା ଆସି
ବାଳକ କହିଲା ଦୁଃଖ, ଯା'ସବୁ ଘଟିଛି ।
ଧୈର୍ଯ୍ୟ ଧରି ଶୁଣିଲା ଶିଆଳ -
ଗର୍ଜନ କରି କହିଲା, "କୃତଘ୍ନ ପାମର
ବାଳକକୁ ଛାଡ଼ି ଦେ' ବେଗେ-
ନହେଲେ ମରିବୁ ନିଷ୍ଟେ ଦୈବୀ ପରାଭବେ ।
ତୋ' ଜୀବନ ରକ୍ଷା କରି-
ଧର୍ମବଳ ଲଭିଛି ବାଳକ,
ଧର୍ମ ତା'ର ସାଥୀ ଅଟେ,
ତୋର ସାଥୀ ଅଟେ ଘୋର ପାପ ।
ଏ ସଂସାର ଧର୍ମେ ଆତଯାତ
ନିଜ ହାତେ ଖୋଳୁଛୁ ତୁ-
ନିଜ ପାଇଁ ମରଣର ଗାତ !

ଗର୍ଜିଲା କ୍ରୋଧେ କୁମ୍ଭୀର ଆଁ କରି ପାଟି
ବାହାରି ଆସିଲା ପିଲା ଦୂରେ ଗଲା ଛୁଟି ।
କୁମ୍ଭୀର ଜାଲରେ ଥାଇ ନ ପାରିଲା ଧରି
ଦଉଡ଼ି ଦଉଡ଼ି ପିଲା ଗଲା ସେ ବାହାରି ।
ହୁକେ ହୋ... ହୁକେ ହୋ, କହି ଦଉଡ଼ିଲା କୋକି
ଘନ ବନ ଭିତରକୁ ଗଲା ଡାକି ଡାକି ।
ପିଲା ଠାରୁ, ଗାଁ ଲୋକେ-
ସବୁକଥା ଶୁଣି,
ଦଉଡ଼ିଲେ ନଦୀ କୂଳେ
ବାଡ଼ି ଠେଙ୍ଗା ଘେନି ।

କୁମ୍ଭୀର ପଡ଼ିଛି ଜାଲେ

ପାରୁନି ବାହାରି

ସର୍ବେ ମିଶି ପିଟି ପିଟି

ଦେଲେ ତାକୁ ମାରି ।

କୃତଘ୍ନତା ପୁରସ୍କାର ମିଳିଗଲା ତାକୁ
ଚତୁର ବିଲୁଆ କାହିଁ ଖୋଜିଲେ ତାହାକୁ ।
ନ ପାଇଲେ ବିଲୁଆକୁ ଗଲାଣି ସେ ବଣେ,
ନନା ନନା ବୋଲି ଡାକି ଦେଲେ ଜଣେ ଜଣେ ।
ବିଲୁଆ ହୋଇଲା ତହୁଁ ସମସ୍ତଙ୍କ 'ନନା'
ହୁକେ ହୋ .. ହୁକେ ହୋ ଡାକେ କହିଲା ବଣରୁ,
'ତୁମର ସ୍ନେହ ଶରଧା କରୁଅଛି ଘେନା ।'

ଅନଗୁଳ

# ଯୀଶୁବାଣୀ

ତ୍ରାଣକର୍ତ୍ତା !

କି ମହାନ ଉଦାର ଅନ୍ତର,
ଜୀବନର ପ୍ରତି ପଦେ-
ତୁମେ ମୋର ସାଥୀ,
କରୁଣାର ଅକ୍ଷୟ ଭଣ୍ଡାର ।

ଦଗ୍ଧ ମୁହିଁ ହେଉଥିଲି ଜଠର ଅନଳେ
ଦେଇଥିଲେ ଖାଦ୍ୟ ପ୍ରଭୁ ଆର୍ତ୍ତ କ୍ଷୁଧାତୁରେ ।
ଶାନ୍ତ ହେଲା ପ୍ରାଣ,
ହେ ପ୍ରଭୁ ପରମଈଶ ତୁମେ କି ମହାନ୍ ।
ଶ୍ରାନ୍ତ କ୍ଲାନ୍ତ ଥିଲି ମୁହିଁ,
ତୃଷାତୁରେ ଚାଟୁଥିଲି ଓଠ,
ପ୍ରତି ମୁହୂର୍ତ୍ତ ରେ ମୁହିଁ
ଭୋଗୁଥିଲି ମରଣର ଚୋଟ ।
ଏତେବେଳେ ହେଲ ଉଭା ଆସି,
ଜୀବଦାନ କରିଥିଲ ଜଳ ଦାନେ-
ପ୍ରଭୁ ହସି ହସି ।

ରୋଗାକ୍ରାନ୍ତ ଥିଲି ମୁହିଁ
ଯନ୍ତ୍ରଣାରେ ଅସ୍ଥିର ଅତୀବ,
ଶଯ୍ୟା ପାଶେ ବସି ପ୍ରଭୁ !
ଦେଇଥିଲ ସ୍ପର୍ଶ ଅନୁଭବ ।

କି କୋମଳ ସେ ପରଶ
ମୋ ପାଇଁ ତା' ଥିଲା ମହୌଷଧି,
ମୃତ୍ୟୁ ମୁଖୁ ଫେରାଇଲ
ମଧୁମୟ ଜୀବନ ପରିଧି ।

ଶତ୍ରୁ ଥିଲି ଯେବେ ମୁହିଁ-
ବନ୍ଦି ରୂପେ ଦଃଖ କାରାଗାରେ,
ବାରବାର ଆସି ତୁମେ, ଆଶ୍ୱାସିଲ
ଥାଇ ମୋ' ପାଶରେ,
ଦେଇଥିଲ ପ୍ରଭୁ ମୋତେ ଅମାପ ଶକତି
ସହିଲି କଷଣ କାରା, ଆହେ ମହାମତି !

ଯେ ଦିନ ନଥିଲା ଅଙ୍ଗେ ଅଙ୍ଗବାସ ମୋର
ବୁଲୁଥିଲି ସତେ ଅବା ଲଙ୍ଗୁଳି ଫକିର,
ସହି ଘୋର ଲଜ୍ଜା ଅପମାନ
ତ୍ରାଣ କରିଥିଲ ପ୍ରଭୁ । ହେ ମହାମହିମ !
ଅଯାଚିତ ଦାନେ,
ଭୁଲିକି ପାରିବି ପ୍ରଭୁ । ସେ ସବୁ ଜୀବନେ ।
ତ୍ରାଣ କର୍ତ୍ତା ପରମ ଈଶ୍ୱର ।
ତୁମେ ଅଟ ରୂପକାର ବିଶ୍ୱ ବିଧାନର ।

ଭୁବନେଶ୍ୱର

# ସ୍ୱର୍ଗ ଓ ନର୍କ

ଦିନେ ଜଣେ ମହାବୀର
ଫେରୁଥିଲେ ସୈନ୍ୟଗଣ ସାଥେ,
ମନ ତାଙ୍କ ମତୁଆଲା
ଦିଗ୍‌ବିଜୟୀ ବିଜୟ ଉନ୍ମାଦେ ।
ଚାଲିଥାନ୍ତି ବନ ପଥେ
ଶତସିଂହ ଗର୍ଜନ ସେ ଟୋଳି
ସୈନ୍ୟଗଣ ଅଗ୍ରଭାଗେ
ଉଭା ବୀର, ମହା ଶକ୍ତିଶାଳୀ ।
ବୃକ୍ଷ ମୂଳେ ତପୋମଗ୍ନ ତପସ୍ୱୀ ପ୍ରବର
ତାପସ ଦର୍ଶନେ ହେଲେ ସୈନ୍ୟଗଣ ସ୍ଥିର ।

ରଥରୁ ଓହ୍ଲାଇ ବୀର
ମୁନି ପଦେ ନତଶିର ହୋଇ,
ପଚାରିଲେ ନମ୍ର କଣ୍ଠେ
ହେ ତାପସ, ଦିଅନ୍ତୁ ବତାଇ,
ଶ୍ରେୟ ସେଇ ସ୍ୱର୍ଗ ପଥ-
ହେୟ ଘୃଣ୍ୟ ନର୍କପଥ ଗୋଟି,
କି କର୍ମ କରିଲେ ନର
ଲଭିଥାଏ ସ୍ୱର୍ଗ, ନର୍କ, ଗତି ?
ମୁନିକଣ୍ଠୁ ନ ସ୍ଫୁରିଲା ବାଣୀ
ଆଉଥରେ ପଚାରିଲେ
ଉଚ୍ଚ କଣ୍ଠେ ସେହି ବୀରମଣି ।
ନମିଳିଲା ଉତ୍ତର ତାହାଙ୍କୁ,
ଗରଜି ଉଠିଲେ ବୀର
ପୁଣିଥରେ ପଚାରି ପ୍ରଶ୍ନକୁ ।

କଠୋର କର୍କଶ ନାଦେ
ଧ୍ୟାନ ଭଙ୍ଗ ହେଲା ମୁନିଙ୍କର,
ଗର୍ଜନ ଶବଦ ଶୁଣି
ଖୋଲିଲେ ସେ ନୟନ ଯୁଗଳ ।
ଧୀର କଣ୍ଠେ କହିଲେ ଅନାଇ
"କିଏ ତୁମେ ଅକାରଣେ
ଧ୍ୟାନ ଭଙ୍ଗ କଲ କାହିଁପାଇଁ ?"
ଏତେ ଅବିବେକୀ
ନ ପାରିଲ ଟାକି !

ମହାବୀର କ୍ରୋଧ ଭରେ
ଖଡ଼ଗ୍ ତାଙ୍କ କଲେ ଉତ୍ତୋଳନ,
କହିଲେ ତପସ୍ୱୀ ହସି ,
ଏହା ଅଟେ ନର୍କ ପଥ ପୁଣ ।
ସହସା ବୁଝିଲେ ବୀର
କରିଛନ୍ତି ଘୋର ଅପରାଧ,
ଅନୁତାପ ଭରିମନେ
କଲେ ସିଏ ସମ୍ବରଣ କ୍ରୋଧ ।
ଖଡ଼ଗ୍ ତାଙ୍କ କୋଷଯୁକ୍ତ
କଲେ ବୀର, ନମ୍ର ଶାନ୍ତ ଭରେ,
ଚାହିଁଲେ ମୁନିଙ୍କ ମୁଖ,
ତାପ ଦଗ୍ଧ ବ୍ୟାକୁଳ ଅନ୍ତରେ ।
ଆଶୀର୍ବାଦ ମୁଦ୍ରା ଟେକି
ମୁନି ତାଙ୍କୁ କହିଲେ, "ହେ ବୀର !
ତୁମେ ପରା ଖୋଜୁଥିଲ -
ପଥଟିଏ ପବିତ୍ର ସ୍ୱର୍ଗର ?
'ଏହା ଅଟେ ସ୍ୱର୍ଗ ପଥ'
ସତ୍ୟ ପଥ ବିବେକର ରାହା,
'କ୍ରୋଧ ଅଟେ ନର୍କ ପଥ'
ଅଗ୍ନି ସମ ସବୁକରେ ସ୍ୱାହା
ନର୍କ ଆଉ ସ୍ୱର୍ଗ ବୋଲି ନାହିଁ କିଛି ଭବେ
ମନର ଅବସ୍ଥା ଏହା, କବଳିତ ସର୍ବେ ।"

# ରାଜା ଶାନ୍ତଶୀଳ

ସେ ରାଇଜ ନାଁ କାଶି ନଗର
ସେଇଠାରେ ଥିଲା ରାଜାଙ୍କ ପୁର-
'ଶାନ୍ତଶୀଳ' ନାମେ ରାଜା,
ବଡ଼ ଅଶାନ୍ତିରେ ଜୀବନ କାଟନ୍ତି
ଚାଲେ ଖାଲି ଧନ ଖୋଜା ।

ପ୍ରଜାଙ୍କୁ ଦିଅନ୍ତି କଷଣ ଭାରି
ଧନୀଙ୍କର ଧନ କରନ୍ତି ଚୋରି-
କ୍ଷମତା ବଳରେ ସିଏ,
ନାନା ଉପଦ୍ରବ କରନ୍ତି ରାଇଜେ
ରକ୍ଷାପାଏ, ଯିଏ ଦିଏ ।

ବହୁଧନ ସିଏ କରିଲେ ଠୁଳ
ଶାନ୍ତି ପାଇଲେନି ହେଲେ ବିକଳ-
ଭରିବାକୁ ଆଉ ଧନ,
ପରଧନ ସଦା ଅପହରଣରେ
ବଳିଲା ତାଙ୍କର ମନ ।

ମୃଗୟା ବିନୋଦେ ଚଳିଲେ ଦିନେ
ରାଜା,ଶାନ୍ତଶୀଳ' ସୈନ୍ୟ ଗହଣେ
ହେଲେ ବନେ ବାଟବଣା
ମୃଗୁଣୀ ପଛରେ ଦଉଡ଼ି ଦଉଡ଼ି
ନ ପଡ଼ିଲା ପଥ ଜଣା ।

ରାଜାଙ୍କୁ ନ ପାଇ ସୈନ୍ୟ ସାମନ୍ତ
ବାହୁଡ଼ିଲେ ରାଜ୍ୟେ ସରବେ ବ୍ୟସ୍ତ
ରାଜହୀନ ରାଜପୁରୀ
ବାଘ ହାବୁଡ଼ରେ ପଡ଼ିଗଲେ ରାଜା ।'
ବୋଲି ପଡ଼ିଗଲା ହୁରି ।

ଏତେବେଳେ ଆସି ସନ୍ନ୍ୟାସୀ ଜଣେ
ଉପଗତ ହେଲେ ରାଜ ଭବନେ,
ପ୍ରଣମି ପଦରେ ରାଣୀ,
ବିକଳେ କହିଲେ ସମସ୍ତ ଘଟଣା
ପ୍ରବୋଧିଲେ ତାଙ୍କୁ ମୁନି ।

"ତପସ୍ୟାରେ ମଗ୍ନ ଅଛନ୍ତି ରାଜା
ଏକ ବନାଶ୍ରମେ, ନପଡୁ ଖୋଜା
ଆସିବେ ଫେରି,
ତପସିଦ୍ଧ ହେଲେ ସେ ତପଃଚାରୀ ।

ଶାନ୍ତ ହେଲେ ସର୍ବେ ଶୁଭ ସମ୍ବାଦେ
ଶୁଭ ମନାସିଲେ ପ୍ରଭୁଙ୍କ ପଦେ-
ସଙ୍କଟ ହୋଇଲା ଦୂର,
କଳ୍ପନା ଜଳ୍ପନା ସବୁ ଶେଷ ହେଲା
ଶାନ୍ତ ହେଲେ ପ୍ରଜାକୁଳ ।

ତପସ୍ୟାରେ ସିଦ୍ଧି ଲଭି ରାଜନ
କରିଲେ ରାଜ୍ୟକୁ ପ୍ରତ୍ୟାଗମନ
ସାଧୁ ସନ୍ଥଙ୍କ ଗହଣେ,
ରାଜ୍ୟ ସାରା ଆଜି ଚହଳ ପଡ଼ିଛି
ସର୍ବେ ଆନନ୍ଦିତ ମନେ ।

ପ୍ରଶାନ୍ତ ମଧୁର ମୁଖମଣ୍ଡଳ
ନବ ସୂର୍ଯ୍ୟସମ ଦିଶେ ଉଜ୍ଜ୍ୱଳ,
କରୁଣା କୋମଳ ଉଦାର ମୂର୍ତ୍ତି
ଲାଭ କରିଛନ୍ତି ସେ ତପଃକୀର୍ତ୍ତି;
ସେ ଦାନଶୀଳ,
ମୁକ୍ତ କରିଦେଲେ ରାଜ ଭଣ୍ଡାର ।

ପାଇଛନ୍ତି ଧନ ତପସ୍ୟା କରି
'ସନ୍ତୋଷ ' ଧନ ହୃଦୟେ ଭରି,
ଦୂର ହୋଇଅଛି ଧନ ଲାଳସା
ତ୍ୟାଗ ଭାବ ହୃଦେ କରିଛି ବସା ।
ମୁନି ଋଷିଙ୍କର ସତ୍ ସଙ୍ଗ ଫଳେ
ମୁନି ଜନୋଚିତ ହୃଦୟ ବଳେ
ରାଜ୍ୟ ଶାସନ,
ମହା ଆନନ୍ଦରେ କଲେ ରାଜନ ।

ପୁତ୍ର ସମ ପ୍ରଜା ପାଳିଲେ ରାଜା
ସାଧୁ ସନ୍ଥ ସମାଗମେ ପରଜା
ଲଭିଲେ ସତ୍‌ସଙ୍ଗ ପରମ ଶାନ୍ତି
ପ୍ରଚାରିତ ହେଲା ବିମଳ କୀର୍ତ୍ତି ।
'ସତ୍‌ସଙ୍ଗ'ର କଲେ ସେ ଜୟଗାନ
ସତ୍‌ସଙ୍ଗ ବିହାର କଲେ ସ୍ଥାପନ ।
ବିରାଜେ ଶାନ୍ତି,
ଦୂର ହୋଇଅଛି ମନରୁ ଭ୍ରାନ୍ତି ।

୧୫/୨/୨୦୦୯
ଭୁବନେଶ୍ୱର

# ଦୁର୍ଗା

ପୁରାଣଯୁଗରେ 'ଦୁର୍ଗମ' ନାମରେ
ଥିଲେ ଜଣେ ଦୈତ୍ୟପତି
ବ୍ରହ୍ମାଙ୍କୁ ସନ୍ତୁଷ୍ଟ କରିଥିଲେ ସିଏ
ଘୋର ତପସ୍ୟାରେ ମାତି ।
ଦୁର୍ଦ୍ଧର୍ଷ ଦୁର୍ଗମ, ମହାଶକ୍ତି ଲଭି
ହେଲେ ମହା ପରାକ୍ରମୀ
ପରାଜିତ କଲେ ଇନ୍ଦ୍ରଦେବତାଙ୍କୁ
ବାହୁବଳେ ସ୍ୱର୍ଗ ଜିଣି ।
ଚରି ବେଦଯାକ ଚୋରି କରିନେଲେ
ରଖିଲେ ଗୁପତେ ତାହା
କ୍ରିୟା, କର୍ମ, ଧର୍ମ ଦୂର ହୋଇଗଲା
ଆଚରଣ ଥିଲା ଯାହା ।
ଦୁର୍ଗମ ଅସୁର ଅତ୍ୟାଚରେ ହେଲା
ଥରହର ତିନିପୁର
ଇନ୍ଦ୍ରଦେବ କାହିଁ ଲୁଚିଲେ ତା' କୋପେ
ନଝରିଲା ବର୍ଷା ଝର ।
ବର୍ଷ ବର୍ଷ ଧରି ବର୍ଷାହେଲା ନାହିଁ
ମିଳିଲାନି ଟୋପେ ପାଣି
ନଦୀ, ହ୍ରଦ, ଝର, ଶୁଖିଗଲା ସବୁ
ଡହକ ବିକଳ ପ୍ରାଣୀ ।
ଅସୁର ଉତ୍ପାତେ ପ୍ରଜାଗଣ ଦୁଃଖ
ବଢ଼ିଲା ଦିନକୁ ଦିନ
ମହାଦେବୀ ମହାମାୟାଙ୍କର ପଦେ
ପଶିଲେ ସର୍ବେ ଶରଣ ।

କରୁଣାମୟୀ ସେ ଜଗତଜନନୀ
ଜଗତ ଆରତ ଶୁଣି
ପ୍ରଚଣ୍ଡମୟୀ ଚଣ୍ଡୀ ରୂପଧରି
ହେଲେ ଦୈତ୍ୟ ସଂହାରିଣୀ ।
ମହାସଂଗ୍ରାମରେ ଦୁର୍ଗମ ଦୈତ୍ୟକୁ
ବିନାଶି ଜଗତମାତା
'ଦୁର୍ଗା' ନାମ ତହୁଁ ଧାରଣ କରିଲେ
ପ୍ରଚରି ଶାନ୍ତିର ବାର୍ତ୍ତା ।
ରାକ୍ଷସ କବଳୁ ବେଦକୁ ଉଦ୍ଧାରି
'ବେଦମାତା' ନାମ ବହି
ପ୍ରତିଷ୍ଠା କରିଲେ ଧର୍ମ କର୍ମ ପୁଣି
ଶାନ୍ତ ସ୍ୱର୍ଗପୁର, ମହି ।
ଧର୍ମର ହେଲା ଜୟ,
ପାପ, ଅନ୍ଧକାର, ଅଧର୍ମର ହେଲା କ୍ଷୟ ।

ଢେଙ୍କାନାଳ

# ବାଳି

ପୁରାଣ ଯୁଗରେ ଗୋଟିଏ ନଗରେ
ଥିଲା ଏକ ଛୋଟ ଘେର
ଛୋଟ ଛୋଟ ଘେରି କରି ଆନନ୍ଦରେ
କାଟୁଥିଲା ତା'ର କାଳ ।

ଦିନେ ସେ ଭାବିଲା ବଡ଼ଘେରୀ କରି
ଲଭିବ ଅଜସ୍ର ଧନ
ଅଭାବ କଷଣ ଦୂର ହୋଇଯିବ
ଆନନ୍ଦେ ବିତିବ ଦିନ ।

ଜୀବନରେ କେବେ ଠାକୁରଙ୍କ ନାଁ
ଧରି ନଥିଲା ସେ ତୁଣ୍ଡେ
ଆଜି ଭକତିରେ ଗଦ ଗଦ ମନ
ମନ୍ଦିରେ ଚଳିଲା ଝଣ୍ଡେ ।

ଆକୁଳ ନୟନେ ଠାକୁରଙ୍କୁ ଚାହିଁ
କରିଲା ଦୁଃଖ ଗୁହାରି
ମନ କାମନା ମୋ' ପୂରଣ କରେ ହେ !
ତୁମ ପଦେ ପ୍ରଭୁ ଅଳି ।

ପ୍ରସନ୍ନ ବଦନେ ମନ୍ଦିରୁ ବାହାରି
ଚାଲିଲା ସେ ତରତର
ଝୁଣ୍ଟିପଡ଼ିଲା ସେ, ତଳେ ପଡ଼ିଗଲା
ମୁଣ୍ଡେ ବାଜିଲା ପଥର ।

ଆଖି ପିଛୁଳାକେ ଛଟଛଟ ହୋଇ
ଗଲିଗଲା ତା'ର ପ୍ରାଣ
ଯମ ଦୂତମାନେ ନେଇଗଲେ ତାକୁ
ଦରବାରେ ଜନ୍ତୁରାଣ ।
ପଞ୍ଜିକା ଖୋଲିଲେ 'ଚିତ୍ରଗୁପ୍ତ' ଆସି
ପାପ ପୁଣ୍ୟ ବିଚାରିଲେ
ଦେବାଳୟେ ଯାଇ କିଛି ପୁଣ୍ୟ ନେଇ
ଆସିଅଛି ଏହିପୁରେ ।
ମୁହୂର୍ତ୍ତକ ପାଇଁ ଇନ୍ଦ୍ର ସିଂହାସନ
ଲାଭ କଲା ପୁଣ୍ୟ ବଳେ
ଉଚ୍ଚପଦ ପାଇ ଦାନ ପୁଣ୍ୟେ ମନ
ବଳାଇଲା ଆନନ୍ଦରେ ।
ଦାନ କରିଦେଲା, 'କାମଧେନୁ' ଗାଭୀ
ବିଶ୍ୱାମିତ୍ର ମହର୍ଷିଙ୍କୁ
ଐରାବତ ହସ୍ତୀ ଦାନ କରି ଦେଲା
ମହାମୁନି ଅଗସ୍ତ୍ୟଙ୍କୁ ।
'ଚିନ୍ତାମଣିରତ୍ନ' ଲଭିଲେ ବଶିଷ୍ଠ
ମହତପା ମହାଋଷି
ଆଉ କେତେ ମୋତି ମାଣିକ୍ୟ ଅର୍ପିଲେ
ଯୋଗ୍ୟପାତ୍ରେ, ହୋଇଖୁସି ।
ଇନ୍ଦ୍ରଙ୍କର ରତ୍ନଭଣ୍ଡାର ସରିଲା
ଦାନ ପୁଣ୍ୟ କର୍ମ କରି,
ପୁଣ୍ୟ ସରିଗଲା ଇନ୍ଦ୍ରପଦ ଗଲା
ଗଲେ ସିଏ ଅପସରି ।

ଦେବେନ୍ଦ୍ର ଲଭିଲେ ନିଜ ସିଂହାସନ
ଦେଖିଲେ ଭଣ୍ଡାରଶୂନ୍ୟ
ବ୍ୟଥିତ ବିବ୍ରତ ହୋଇ ସେ ଭେଟିଲେ –
ଧର୍ମରାଜ, କ୍ଷୁବ୍ଧ ମନ ।
ଅଭିମାନ ଭରା କଣ୍ଠରେ କହିଲେ
ଇଏ କି ବିଚ୍ଛର ତବ
ଶୂନ୍ୟ କରିଦେଲେ ମୋ ରାଜଭଣ୍ଡାର
ଆପଣଙ୍କ ଇନ୍ଦ୍ର ନବ ।
ଯମରାଜ ତାଙ୍କୁ କହିଲେ ଦେବେନ୍ଦ୍ର
ନ କରନ୍ତୁ ମନେ ଦୁଃଖ
ଏତେଦିନ ଧରି ଭୋଗ କରିଲେ ତ
ଅମୂଲ୍ୟ ସମ୍ପତ୍ତି ସୁଖ ।
ତଥାପି ତୁଟିନି ଲୋଭ ମୋହ ମାୟା
ସମ୍ଭୋଗ ବାସନା ତବ
ନିର୍ଲୋଭେ ସେ ଇନ୍ଦ୍ର ଦାନ କରିଛନ୍ତି
ଦୁଷ୍ପ୍ରାପ୍ୟ ସ୍ୱର୍ଗ ବିଭବ ।
ମହାଯଜ୍ଞ ଫଳ ମିଳିଅଛି ତାଙ୍କୁ
ପାପରୁ ଅଧିକ ପୁଣ୍ୟ
ସେ ନୁହନ୍ତି ଆଉ ଅତୀତ ତସ୍କର
ନୁହନ୍ତି ସେ ଆଉ ଘୃଣ୍ୟ ।
ଦାନପୁଣ୍ୟ କରି ଧର୍ମବଳ ଧରି
ଲଭିବେନି ନର୍କବାସ
ମର୍ତ୍ତ୍ୟ ପୁରେ ଯାଇ ଜନମ ହୋଇବେ
ଲଭିବେ ଅମାପଯଶ ।
ପର ମୁହୂର୍ତ୍ତରେ 'ବାଳି' ରୂପେ ସିଏ
ଜନମିଲେ ମରତରେ
କିଷ୍କିନ୍ଧ୍ୟା ରାଜ୍ୟର ହେଲେ ଅଧିଶ୍ୱର
ଯଶରଖି ମହିତଳେ ।

ଢେଙ୍କାନାଳ

# ଚନ୍ଦ୍ରଶେଖର ଆଜାଦ

ମନେପଡ଼େ ସେ ମହାନ୍ ସ୍ମୃତି
ଦିଶେ ଦୂର ଅତୀତର ସେ ଅମ୍ଳାନ ଜ୍ୟୋତିଃ
ପରାଧୀନ ଭାରତର ଅନ୍ଧକାର ଦୂର ଦିଗ୍‌ବଳୟେ
ଆଜିବି ଜଳୁଛି ଦୀପ ଇତିହାସ ଅଭୁଲା ଆଳୟେ ।

ପରାଧୀନ ଭାରତର ଚତୁଃର୍ଦ୍ଦିଗେ
ଶୁଭେ ଦୃପ୍ତ ବିପ୍ଳବ ଦୁନ୍ଦୁଭି,
ମୁକ୍ତି ଆନ୍ଦୋଳନେ ମତ୍ତ ନିଖିଳ ଭାରତ
ନିନାଦିତ ମୁକ୍ତିର ପୂରବୀ ।

ଲକ୍ଷ୍ୟ ଏକ, ପଥ ଏକ, ମୁକ୍ତିଯାତ୍ରା ଚାଲିଛି ଆଗକୁ
ପରାଧୀନ ଭାରତକୁ ଦାସତ୍ୱରୁ ମୁକ୍ତ କରିବାକୁ,
ମୁକ୍ତି ଶଙ୍ଖ ବାଜେ ଘନଘନ
ଉଠ ଦେଶଭକ୍ତ ଗଣ ଉଠରେ ନବୀନ ।

ସେ ଦିନି ଯୁବକବନ୍ଧୁ ସଙ୍ଗମ ପୀଠରେ
ଦେଖୁଥିଲେ ଅସ୍ତସୂର୍ଯ୍ୟ ଦିଗ୍‌ବଳୟ କୋଳେ,
ଦିଗହଜା ନୀଳବୁକେ ହସେ ରକ୍ତ ଆଭା
ଉଠେ ଫୁଲି ଫୁଲି,
ହେ ନବ ଯୁବକ ଦଳ ଦେଶ ମୁକ୍ତି ପାଇଁ
ଖେଳ ରକ୍ତ ହୋଲି ।

ଆଜାଦ ଚନ୍ଦ୍ରଶେଖର, ସୁଖଦେବ, ପୃଥ୍ୱିରାଜ ମିଶି
ଆଲଫ୍ରେଡ୍ ପାର୍କ ପଥେ ଗଲେ ହସିହସି,
ଛଦ୍ମବେଶ ତଳେ,
ବସିଲେ ଉଦ୍ୟାନେ ଯାଇ, ନିରୋଳା ଥାନରେ ।
ମନ୍ତ୍ରଣାରେ ମଗନ ତିନିହେଁ,
ଦେଶ ପାଇଁ ରକ୍ତ ଦେବେ
ଯୁବରକ୍ତ ମୁକ୍ତି ଖାଲି ଚାହେଁ ।

ବ୍ରିଟିଶ ଶାସନ ଦେବ ତାଙ୍କୁ ପୁରସ୍କାର
ଧରିଆଣି ଦେବ ଯିଏ ଆଜାଦ୍‌ଙ୍କୁ,
ଅବା, ତାଙ୍କ ଶିର ।
ମିଳିଲା ସନ୍ଧାନ,
ଘେରିଗଲେ ଚଉପାଶେ ଉଦ୍ୟାନରେ
ଗୋରା ସୈନ୍ୟଗଣ ।

ଷଡ଼ଯନ୍ତ୍ର ଗନ୍ଧବାରି ଥୋକେ-
ଦୁଇବନ୍ଧୁ ପଳାଇଲେ ଆଖି ପିଛୁଳାକେ,
ଆଜାଦ ରହିଲେ ଏକା
ଶତ୍ରୁ ସାଥେ କରିଲେ, ଲଢ଼େଇ,
ଟେକିଲେ ପିସ୍ତଲ, ହାତେ
ସେ ନିଜକୁ ଦେବାକୁ ଉଡ଼ାଇ,
ବ୍ରିଟିଶ ବାହିନୀ ହାତେ ନ ପଡ଼ିବା ପାଇଁ ।

ଆଖି ମେଲୁଥାଇ କିନ୍ତୁ ପଡ଼ିଲେ ସେ ଟଳି
ବିଦ୍ଧ କଲା ତାଙ୍କ ବୁକୁ ଶତ୍ରୁସେନା ଗୁଳି ।
ସେ ଅମ୍ଳାନ ଦୀପଶିଖା ଯୌବନର ଆଦ୍ୟ ବସନ୍ତରେ
ଲିଭିଲା ଅଚିରେ ।
ଆଜି ତାଙ୍କୁ ତୋଳୁଛି ସଲାମ୍
ଜୀବନ ଦେଲେ ପଛକେ
ବ୍ରିଟିସ୍‌ର ହେଲେନି ଗୁଲାମ ।

ବିଦ୍ର ; ଚନ୍ଦ୍ରଶେଖର ଆଜାଦ୍ ୧୯୩୧ ମସିହା ଫେବୃୟାରୀ ୨୭ ତାରିଖ ଦିନ ଏଲାହାବାଦର ଆଲଫ୍ରେଡ୍ ପାର୍କ ମଧ୍ୟରେ, ବନ୍ଧୁଗହଣରେ ମନ୍ତ୍ରଣା କରୁଥିବା ସମୟରେ ବ୍ରିଟିଶ ସୈନ୍ୟବାହିନୀ ଦ୍ୱାରା ଗୁଳିବିଦ୍ଧ ହୋଇ ପ୍ରାଣ ହରାଇଥିଲେ । ବୟସ ମାତ୍ର ୨୫ ବର୍ଷ । ପୃଥ୍ୱୀରାଜ ଓ ସୁଖଦେବ ତାଙ୍କର ଦୁଇବନ୍ଧୁ ।

# ମହିଷାସୁର

ସୁପାର୍ଶ୍ୱ ମହର୍ଷି ମନ୍ଦର ପର୍ବତେ
ରଚିଲେ ଆଶ୍ରମ ଏକ
ପୁରାଣ ଯୁଗରେ ଘୋର ଅରଣ୍ୟରେ
ଥିଲା ଆଶ୍ରମର ଟେକ ।
ଅତୀବ ସୁରମ୍ୟ ସେ ବନ ଅଗମ୍ୟ
ପ୍ରାକୃତିକ ପରିବେଶେ
ନନ୍ଦନବନକୁ ନିନ୍ଦିତ କରଇ
ମର୍ତ୍ତ୍ୟ ପାରିଜାତ ହସେ ।
ତପସ୍ୟାରେ ରତ ଥାଆନ୍ତି ମହର୍ଷି
ଆଚରି ସେ ଯଜ୍ଞଧାରା
ହୋମ ଧୂମ ଗନ୍ଧେ ମହକିତ ବନ
ଶାନ୍ତିର ଆଳୟ ପରା ।

'ବିପ୍ରଚିତି' ନାମେ ଥିଲା ଏକ ଦୈତ୍ୟ
ତା'ର କନ୍ୟା 'ମହିଷ୍ମତୀ'
କାନନ ବିହାରେ ଆସିଥିଲା ଦିନେ
ସଖୀ ମେଳେ ରୂପବତୀ ।
ଦେଖି ପୁଷ୍ପମୟୀ ଆଶ୍ରମ ଉଦ୍ୟାନ
ଉଲ୍ଲାସ ଉଚାଟ ମନ
ହର୍ଷ ହିଲ୍ଲୋଳିତ ମୁଗ୍ଧ ପୁଲକିତ
ତାର ପ୍ରିୟ ସଖୀଗଣ ।
ବସିଗଲେ ସର୍ବେ କୁଳୁ ନିନାଦିନୀ
ତଟିନୀ ତଟେ ସେ ବନେ
କରିଲେ ମନ୍ତ୍ରଣା, ଋଷିଙ୍କୁ ଯନ୍ତ୍ରଣା
ଦେବେ ଭୟ ପ୍ରଦର୍ଶନେ ।
ଋଷି ଚାଲିଗଲେ, ରଚିବେ ସେଠାରେ
କାନନ ବିହାରସ୍ଥଳୀ,
ଆନନ୍ଦରେ ସର୍ବେ କରିବେ ବିହାର
ହୋଇ ସର୍ବେ କୁତୂହଳୀ ।
ଛଳବିଦ୍ୟାରେ ସେ ଅଟଇ ନିପୁଣା
ଦୈତ୍ୟକନ୍ୟା ମହିଷ୍ମତୀ
ମହିଷୀର ରୂପ ଧାରଣ କରିଲା
ନିମିଷକେ ଛଳବତୀ ।
ଶିଙ୍ଗକୁ ହଲାଇ ଲାଞ୍ଜ ଦୋହଲାଇ
ମହର୍ଷିଙ୍କୁ ଡ଼ରାଇଲା
ତପୋବଳେ ଋଷି ଜାଣିଗଲେ ସବୁ
ଦୈତ୍ୟକନ୍ୟା ଛଳଲୀଳା ।
କ୍ରୋଧ ଜର୍ଜରିତ ମହର୍ଷି ତାହାକୁ
ଦେଲେ ଅଭିଶାପ ଘୋର
ମହିଷୀ ରୂପରେ ହୋଇଯା ମଇଁଷି
ମିଥ୍ୟା ନୁହେଁ ଶାପ ମୋର ।

"ଋଷିଙ୍କୁ ବିକଳେ ପ୍ରାର୍ଥନା କରିଲା
ମୋଚନ କରନ୍ତୁ ପାପ
ନିଜ କନ୍ୟା ଭାବି ମୁକତି ଦିଅନ୍ତୁ
ଦୂର ହେଉ ଅଭିଶାପ ।"
ଋଷି ବାକ୍ୟ କେବେ ଅନ୍ୟଥା ନ ହୁଏ
ଅବଶ୍ୟ ଭୋଗିବ ତାହା
ମହିଷ ସନ୍ତାନ ଜନ୍ମ ଦେବା ପରେ
ଫିଟିବ ସୁଖର ରାହା ।'
କିଛିଦିନ ପରେ ରମ୍ଭାସୁର ସାଥେ
ମିଳନ ହୋଇଲା ତା'ର
ମହିଷ ସନ୍ତାନ ଜନ୍ମ ଦେଲା ସିଏ
ନାମ ତା' ମହିଷାସୁର ।

ମହିଷ୍ମତୀ ହେଲା ଶାପମୁକ୍ତ ତହିଁ
ଲଭିଲା ତା' ନିଜ ରୂପ
ଆନନ୍ଦ ମନରେ ବାହୁଡ଼ିଲା ଗୃହେ
ଆନନ୍ଦିତ ଦୈତ୍ୟ ଭୂପ ।
ମହିଷାସୁରର ପ୍ରଚଣ୍ଡ ପ୍ରତାପେ
ଥରହର ତିନିପୁର
ତ୍ରାହିତ୍ରାହି ଡାକ ଛାଡ଼ିଲେ ବିକଳେ
ସରବେ ଦେବତା ନର ।
ଦୁର୍ଗତିନାଶିନୀ ମାତା ଦୁର୍ଗାଦେବୀ
ପଦେ ପଶିଲେ ଶରଣ
ସେଦେଲେ ଅଭୟ, ଶିର ତା'ର ଛେଦି
କରିଲେ ତାକୁ ନିଧନ ।
ଦୁଃଖ ଦୂର ହେଲା ଶାନ୍ତି ବିରାଜିଲା
ଶାନ୍ତ ହେଲା ତିନିପୁର
ଦୁଷ୍ଟ ବିନାଶିନୀ ଜଗତଜନନୀ
ମାରିଲେ ମହିଷାସୁର ।
ଦୁର୍ଗତି ନାଶିନୀ ଦେବୀ
ଦୁଃଖ ଦୂର କଲେ ଦୁଷ୍ଟକୁ ପରାଭାବି ।

# ଠାକୁରଙ୍କ ଅନ୍ଧାରିବିଜେ

ଶ୍ରୀ ପୁରୁଷୋତ୍ତମ କ୍ଷେତ୍ର ଶ୍ରୀକୃଷ୍ଣଙ୍କ
ଭୋଗ ଭୂମି ରୂପେ ଅଟେ ବିଖ୍ୟାତ
ମଥୁରାପୁରୀର ପବିତ୍ର ଭୂମିରେ
ଦେବକୀଙ୍କ ଗର୍ଭେ ହେଲେ ସେ ଜାତ ।
ସେଠାରେ ରଚିଲେ ଜନ୍ମଲୀଳା,
ବୃନ୍ଦାବନ ପୁଣ୍ୟ ଭୂମିରେ ରଚିଲେ
ଯଶୋଦାଙ୍କ କୋଳେ ସେ ବାଲ୍ୟଲୀଳା ।
ଦ୍ୱାରକା ରାଇଜେ ରାଜୁତି କରିଲେ
ଯଉବନ ଲୀଳା ରଚିଲେ ତହିଁ,
ଭୋଗ ଖାଇବାକୁ ଆସନ୍ତି ଶ୍ରୀକ୍ଷେତ୍ରେ
ଏ ପ୍ରସାଦ ତୃପ୍ତି ନ ମିଳେ କାହିଁ ।
ଏ' ଜନଶ୍ରୁତି,
ଶ୍ରୀକୃଷ୍ଣ ରୂପରେ ପ୍ରଭୁ ଜଗନ୍ନାଥ ଜଗତପତି ।

ଅଟନ୍ତି ଶ୍ରୀରାଧା ପ୍ରେୟସୀ ଶ୍ରେୟସୀ
ଯୁଗେ ଯୁଗେ ଚାଲେ ପ୍ରଣୟଲୀଳା,
ଉତ୍ତରପ୍ରଦେଶେ 'ବରାସନା' ଗ୍ରାମେ
ଜନ୍ମ ଲଭିଥିଲେ ଶ୍ରୀମୟୀ ବାଳା ।

ସେ ଗାଁ ପାହାଡ଼େ ଶ୍ରୀରାଧା ମନ୍ଦିରେ
ଏବେ ବି ଚାଲିଛି ଶ୍ରୀମତୀ ପୂଜା
ପ୍ରଭୁ ଜଗନ୍ନାଥ ଶ୍ରୀକୃଷ୍ଣ ବେଶରେ
ଆସନ୍ତି, ହୋଇଲେ ମନ୍ଦିର ବୁଜା ।

ଶୂନ୍ୟ କରାଯାଏ ମନ୍ଦିରର ବେଢ଼ା
ପହଡ଼ ପଡ଼ିଲେ ଠାକୁରଙ୍କର
ଶ୍ରୀ ଜଗନ୍ନାଥଙ୍କ ଅନ୍ଧାରି ବିଜେ
ହୋଇଥାଏ ନିତି ରାଧାମନ୍ଦିର ।
ଏହି ପରମ୍ପରା ଚାଲେ ଶ୍ରୀମନ୍ଦିର ନୀତିକୁ ନେଇ
ପ୍ରେମମୟ ପ୍ରଭୁ ଦେବ ଅଭିସାର ପାଳନ ପାଇଁ
ନିର୍ଜନ ରାତିରେ ଶ୍ରୀମନ୍ଦିରୁ ପ୍ରଭୁ
କିଛି ଘଣ୍ଟା ପାଇଁ ହୁଅନ୍ତି ଦୂର,
ଶ୍ରୀରାଧା ଦର୍ଶନ ସାରି ସେ ଫେରନ୍ତି
ନୀଳାଚଳ ଧାମେ ପ୍ରୀତି ବିଭୋର ।
ଏହାକୁ କହନ୍ତି ଶ୍ରୀଜଗନ୍ନାଥଙ୍କ ଅନ୍ଧାରିବିଜେ
ସେ ଯେ ପ୍ରେମମୟ ଚର୍ଚ୍ଚିତ ଚିନ୍ମୟ
ମୁକ୍ତି ପ୍ରଦାୟକ ଅଟନ୍ତି ସେ’ ଯେ ।

ପୁରୀ

# ଭଲା ରାମଚଣ୍ଡୀ ଭଲାରେ

"ଭଲା ରାମଚଣ୍ଡୀ ଭଲାରେ
କଳାପାହାଡ଼କୁ ଦୁଆରେ ବସାଇ
ଭଲା ପାଣି ଆଣି ଗଲାରେ ।"
ଏ'ଜନଶ୍ରୁତି ... କହୁଛି ଏଥି ।

"ଶ୍ରୀରାମଚଣ୍ଡୀ
ଦୀର୍ଘ ଅତୀତରେ କୋଣାର୍କ ମନ୍ଦିର
ଥିଲେ ସେ ମଣ୍ଡି ।
ବଙ୍ଗନବାବଙ୍କ ହିନ୍ଦୁ ସେନାପତି କଳାପାହାଡ଼
ଜାତିରେ ବ୍ରାହ୍ମଣ, କନ୍ଦର୍ପନିନ୍ଦି ରୂପ ତାହାର ।
ନବାବ ଦୁଲାଳୀ ପଡ଼ିଲା ପ୍ରେମେ,
ସେ ସେନାପତିଙ୍କୁ ବିବାହ କରିଲା ଶ୍ରଦ୍ଧା ପଣେ ।
ଜାତି ଧର୍ମ ହରା କଳାପାହାଡ଼
ଦୁଃଖ ଅନୁତାପେ ହେଲେ ଜର୍ଜର,
ପଶିଲେ ଶରଣ ମୁକ୍ତି ମଣ୍ଡପେ
ପାପୁ ମୁକ୍ତି ପାଇଁ ଘୋର ସନ୍ତାପେ ।
ମାଗିଲେ କ୍ଷମା,
କଠୋର କଣ୍ଠେ ପଣ୍ଡିତ ସଭା କରିଲା ମନା ।

କଳାପାହାଡ଼ଙ୍କ ପ୍ରତିଶୋଧ ବହ୍ନି ହେଲା ପ୍ରବଳ
ହିନ୍ଦୁ ଦେବଦେବୀ ମନ୍ଦିର ସବୁ -
ଧ୍ୱଂସ କରିବେ ଶପଥ ଘୋର ।
ତ୍ରିମୂର୍ତ୍ତିରୁ 'ବ୍ରହ୍ମ' ଲୁଚାଇ ରଖିଲେ ପୂଜକଗଣ
ଦେବମୂର୍ତ୍ତି ସବୁ ଧ୍ୱଂସ କରିଦେଲା ମୂଢ଼ ଯବନ ।

ତା'ପରେ ପଶିଲା କୋଣାର୍କେ ଯାଇ
ମାତା ରାମଚଣ୍ଡୀ ନାରୀବେଶ -
ଧରି ଗଲେ ପଳାଇ ।
ଧରିଛନ୍ତି କାଖେ କଳସୀ ଏକ
କୁଶଭଦ୍ରା ନଦୀ ଆଡ଼କୁ ଚାଲିଲେ ସେ ଝପ୍‌ଝାପ ।

ଗଭୀର ସ୍ରୋତରେ ପଶିଯାଇ କଲେ ଜଳବିହାର
କୂଳେ ରହିଁ ଅଛି ଲାଳସା ମଥିତ କଳାପାହାଡ଼ ।
ଫେରିଲା ସେ ଦୀର୍ଘ ପ୍ରତୀକ୍ଷା ପରେ
ଭାଙ୍ଗିଲା ମୂର୍ତ୍ତି ମନ୍ଦିର ବେଢ଼ା, ସେ କ୍ରୋଧ ଭରେ
ପର୍ତ୍ତୁଗାଲ ଜଳଦସ୍ୟୁ ଆକ୍ରମଣେ ଭାଙ୍ଗିଛି ଚୂଡ଼ା
ଯବନ ସୈନିକ ଭାଙ୍ଗିଲେ ମୂରତି କୀରତି ବେଢ଼ା ।
ଗଲା ସେ ଚାଲି,
ଭଗ୍ନ ମନ୍ଦିର ରହିଲା ଖାଲି ।

କୋଣାର୍କ ମନ୍ଦିର ଦକ୍ଷିଣ ପଶ୍ଚିମେ ମନ୍ଦିର ଏକ
'ପ୍ରତିଷ୍ଠିତ ହେଲେ ମାତା ରାମଚଣ୍ଡୀ', ରହିଲା ଟେକ ।
ଭକତ ଅଭିଷ୍ଟ ପୂରଣ କରନ୍ତି ପ୍ରତ୍ୟକ୍ଷ ଦେବୀ
ଯଶକୀର୍ତ୍ତୀ ଧନ ଲଭନ୍ତି ଭକତ ସେ ପଦ ସେବି ।

ପୁଣ୍ୟ ବଇଶାଖ ପୂର୍ଣ୍ଣିମା ତିଥିରେ
'ହାଣ୍ଡିଭଙ୍ଗା ଯାତ' ହୁଏ ଜମକେ
କେତେ କୁଳନାରୀ ନୂଆହାଣ୍ଡିଧରି
ଆସନ୍ତି ସେଠାକୁ ବାଜାଟମକେ ।

ନିଜ ପରିବାର କୁଶଳ କାମନା
କରି ଆଚରନ୍ତି, ଏ ମହାବ୍ରତ
'ହାଣ୍ଡିଭଙ୍ଗା ବନ୍ତେ' ହାଣ୍ଡି କଚାଡ଼ନ୍ତି
ମାତା ରାମଚଣ୍ଡୀ ସୁମରି ସେତ ।
ନୂଆହାଣ୍ଡି ଆଣି ରାନ୍ଧନ୍ତି ଖେଚୁଡ଼ି
ମିଶାଇ ନଡ଼ିଆ ନବାତ ଘିଅ
'କ୍ଷୀରକୋଳି' ଚଟୁ ଚଳାଇ କରନ୍ତି
ସେ ଖେଚୁଡ଼ି ପାଗ ପାଇବେ ଦିଅଁ ।
ରନ୍ଧା ଖେଚୁଡ଼ିରେ ଅତି ଯତନରେ
ବଳନ୍ତି ସେମାନେ ପିଣ୍ଡୁଳା ଦୁଇ
ବାଘ ବାଘୁଣୀଙ୍କ ଖାଇବା ପାଇଁ ।

'ହାଣ୍ଡିଭଙ୍ଗା ବନ୍ତ' ପାଖକୁ ଯାଆନ୍ତି ପୂଜକ ମାଳୀ
ତାଙ୍କ ପଛେ ସବୁ ଚାଲନ୍ତି ନାରୀଏ ହାଣ୍ଡିକୁ ଧରି ।
ପ୍ରଦକ୍ଷିଣ କରି 'ହାଣ୍ଡିଭଙ୍ଗା ବନ୍ତ' ସେ ଛଅଥର
କଚାଡ଼ି ଦିଅନ୍ତି, ହାଣ୍ଡିକୁ ତାଙ୍କର ଭକତି ଭୋଳ ।
ଦେବୀଙ୍କୁ ସ୍ମରି,
ପରିବାର ଯଶ ପଉରୁଷ ଶୁଭ କାମନା କରି ।

ରାମଚଣ୍ଡୀଙ୍କର ହାଣ୍ଡିଭଙ୍ଗା ଯାତ ଦେଖିବା ପାଇଁ
ଦେଶବିଦେଶର ପର୍ଯ୍ୟଟକ ଦଳ ଆସନ୍ତି ଧାଇଁ ।
ମନ୍ଦିରର ଏଇ ପୁରାତନ ପ୍ରଥା ଯୁଗଯୁଗର
ପରମ୍ପରା କ୍ରମେ ଚାଲିଆସିଅଛି, ଏ ଭରପୂର,
ରହସ୍ୟ, ବିସ୍ମୟ, ଉଲ୍ଲାସଭରା,
ଏ ନୀତି ପରା !

ରାମଚଣ୍ଡୀ ଦେବୀଙ୍କ ଉପରେ ଥିବା ଏହି ଜନଶ୍ରୁତି ଅତି ପୁରୁଣା । ଏଠାରେ ହେଉଥିବା ରହସ୍ୟମୟ ହାଣ୍ଡିଭଙ୍ଗା ଯାତ ବୈଶାଖ ପୂର୍ଣ୍ଣିମା ତିଥିରେ ପାଳିତ ହୁଏ ।

# କ୍ଷୀରୀଖିଆ ଠାକୁର

କଣ୍ଠୁ ଝରାଇ ମଧୁ ସଙ୍ଗୀତ ମଧୁର ଝର
ପ୍ରାର୍ଥନାକରେ ମୁଗ୍ଧ ଶିଶୁଟି ଭକତି ଭୋଳ ।
'ହେ ପ୍ରଭୁ ମୋର
ନାଥ ଅଭାର !
ଖାଅ ମୋ କ୍ଷୀରୀ
ବାପା ମୋ ଯାଇଛି ଭିକ୍ଷା କରି ।
"ମୁଁ ମଧୁସୂଦନ ଅବୋଧ ବାଳକ
ଜାଣେ ନାହିଁ ପ୍ରଭୁ ପୂଜାର ଧାରା
ମନ୍ତ୍ର ତନ୍ତ୍ର କିଛି ମୁଁ ଜାଣେନା
ଜାଣେ ନାହିଁ ବିଧି ବିଧାନ ପରା ।
ମୋ' ବାପା ଫେରିଲେ ତୁମ ପୂଜାବିଧି
ମହାଆନନ୍ଦରେ ପାଳିବେ ସିଏ
ଆବାହନ ଆଉ ଆଚମନ କିଛି
ଜାଣିନି ଅବୋଧ ମୁଁ ଶିଶୁଟିଏ ।
କ୍ଷୀରୀକରି ମା' ଭୋଗ ବାଢ଼ିବାକୁ
ପଠାଇ ଅଛନ୍ତି ହାତରେ ମୋର
ବାପା କହିଛନ୍ତି ପୂଜା କରି ମୁହିଁ
ଅର୍ପଣ କରିବି ଏ' ଭୋଗଥାଳ
ମୋ' ସୁନାଠାକୁର ଅଝଟ ନକର
କ୍ଷୀରୀ ଖାଇ ଥାଳି କରହେ ଖାଲି
କୁନି ଭକତର ଅଳି ଘେନାକର
ନ ହେଲେ ବାପାଠୁ ଖାଇବି ଗାଳି ।
ଏତିକି କହି ସେ ଭୋଗଥାଳି ନେଇ ଥୋଇଲା ପୀଠେ
ଆଖିବୁଜି ପୂଜା ଅବଲୟ କରି ଭକତି ଗୀତେ-
ଡାକିଲା ପ୍ରଭୁଙ୍କୁ ଶରଧା ଢାଳି,
ତାଳି ମାରି ମାରି ବାଟ ଆଉଜେଇ ଆସିଲା ଚଳି ।

କିଛି କ୍ଷଣପରେ ଅତି କୁତୂହଳେ ଖୋଲିଲା ଦ୍ୱାର
ଦେଖିଲା ଠାକୁରେ ଖାଲି କରିଛନ୍ତି ତା' ଭୋଗଥାଳ ।
ତା' କ୍ଷୀରୀ ଖାଇ,
ଆନନ୍ଦେ ହସନ୍ତି ଭକତବତ୍ସଳ ଅଲାର ସାଇଁ ।

ଶ୍ରୀକେତନ ପଣ୍ଡା ଗାଁ ଗାଁ ବୁଲି ଫେରିଲେ ଘର
ପୂଜା ଲୁଗା ପିନ୍ଧି ଦେଉଳକୁ ଗଲେ,
ଅପୂଜା ଅଛନ୍ତି ତାଙ୍କ ଠାକୁର ।
ଅଭିନବ ଦୃଶ୍ୟ ଦେଖିଲେ ଏ'କି !
ଭକତ ବାଳକ ଶିରପରେ ପ୍ରଭୁ
ଶୁଭାଶିଷେ ହାତ ଅଛନ୍ତି ଟେକି ।
ନୟନୁ ବହିଲା ଧାର ଧାର ଅଶ୍ରୁ ଆନନ୍ଦଭରେ
ଭକତ ବତ୍ସଳ ଅଲାରନାଥଙ୍କ
କୀରତି ରଟିଲା ଏ ମହିତଳେ ।

ସ୍ନାନ ପୂର୍ଣ୍ଣିମାରେ ମହାସ୍ନାନ କରି ତିନିଠାକୁର
ଅନସର ଘରେ ବିଜେ କରିଥାନ୍ତି ଶୂନ୍ୟ ମନ୍ଦିର ।
ଭାବଭୋଳା ପ୍ରଭୁ ଭକତ ଗଣ
ଅଲାରନାଥଙ୍କୁ କରି ଦର୍ଶନ
ହୁଅନ୍ତି ମୁଗ୍ଧ,
ସ୍ୱୟଂ ନାରାୟଣ ଅଲାରନାଥ ।
ଭକତର କ୍ଷୀରୀଖିଆ ଠାକୁର
ପ୍ରିୟ ତାହାର ।

ଭୁବନେଶ୍ୱର, ତା ୨/୭/୨୦୧୦

# କପିଳାସ

ମନ୍ଦିର ଦିଶୁଛି କେଡ଼େ ସୁନ୍ଦର
ଠାକୁରେ ଅଛନ୍ତି ରହି
ମୁଁ ଦେଖୁଛି ତହିଁ ପୁରାଣ ଯୁଗର
ପୁରୁଣା କଥାର ନଈ
ବହୁଛି ଝରଣା ରୂପେ,
'ଗଙ୍ଗନାରାୟଣ' ଅଙ୍ଗୁଳି କୋଣୁ
କୁଳୁ କୁଳୁ ମଧୁ ଗୀତେ ।

ହିମାଳୟେ ଥିବା କୈଳାସ ପର୍ବତ
ହର ପାର୍ବତୀ ତହିଁ
ବାସ କରନ୍ତି ସେ ତପସ୍ୟା ରତ
ଦୁଇ ପୁତ୍ରଙ୍କୁ ନେଇ,
ବୃଷଭ ବାହନ ଧଳା,
ତା' ପିଠିରେ ବସି ମଙ୍ଗଳମୟ
ବୁଲନ୍ତି ଜଗତ ସାରା ।
ଶିବଙ୍କର ସେଇ ମହାନ୍ ଭକ୍ତ
ରାବଣ ଲଙ୍କାପତି
ଆସନ୍ତି ଦର୍ଶନେ କୈଳାସ ଧାମେ
ଲଙ୍କାପୁରୀରୁ ନିତି ।
ଅଜବ ଖିଆଲେ ବୀର
ଭାବିଲେ କାହିଁକି ନିତି ଦଉଡ଼ିବି
ଉପାଡ଼ିଲେ ସାନୁ ଶିରଃ ।

ହାତ ଚକିରେ ସେ ଧରିଲେ ଯତନେ
ଉଡ଼ିଲେ ଆକାଶ ପଥେ
ଲଙ୍କାପୁରକୁ ନେଇଯାଉଛନ୍ତି
ଶିବ.. ଶିବାଳୟ ସାଥେ ।
ବାଟରେ ପଡ଼ିଲା ଘନ ନିର୍ଜନ ବନ,
ଶିବ ଓ ଶିବାନୀ ତପସ୍ୟା ରଚିବେ
ତପମୁଖୀ ହେଲା ମନ ।

କୋପକଲେ ହର, ହାତେ ଟଳମଳ
କୈଳାସ ଶୃଙ୍ଗ ତହିଁ
ଖସିପଡ଼ି ତଳେ ମାଟିକୁ ଭେଦିଲା
ଉଠାଇ ପାରିଲେ ନାହିଁ,
ଥାପିଲେ, 'ବିଲଙ୍କା'ପୁର
ପୂଜା ଆରାଧନା ସାରି ଲଙ୍କାପତି
ବାହୁଡ଼ିଲେ ଲଙ୍କାପୁର ।
ଏଇ ଝାଡ଼ଖଣ୍ଡେ କୈଳାସ ପର୍ବତେ
ପ୍ରଭୁଙ୍କ ପବିତ୍ର ପୀଠ
କୈଳାସ ନାମୁ 'କପିଳାସ' ହେଲା
ପୂଜିତ କୈଳାସନାଥ ।
କପିଳ ମହର୍ଷି ସାଧୁ ସନ୍ଥ ମୁନି ଜନ
କେତେ ସିଦ୍ଧଋଷି, ପୁଣ୍ୟ ପଥେ ଆସି
ଆଶ୍ରିଲେ ତପୋବନ ।

'ସୌଦାସ' ନାମେ କାଶୀ ରାଜ ଦିନେ
ଶିବଙ୍କ ସ୍ୱପ୍ନାଦେଶେ
'ଗୁପ୍ତକାଶୀ' ଏଇ କପିଳାସେ ଆସି
ପାପୁ ମୁକ୍ତ ହେଲେ ଶେଷେ ।
ଗଢ଼ିଲେ ମନ୍ଦିର ଏକ
କୋଠାବାଡ଼ି ଗଢ଼ି ଭଣ୍ଡାର ଥାପି
ବାହୁଡ଼ିଲେ ରଖି ଟେକ ।
ଗୋବଧ କରିଲେ 'ଗଜପତି ଦେବ'
ସେ ପ୍ରତାପ ନରସିଂହ
ଶରଣ ପଶିଲେ ଜଗନ୍ନାଥଙ୍କର
କରି ମହାପାପ, ଦ୍ରୋହ ।
ପ୍ରଭୁଙ୍କ ଅନୁଜ୍ଞା ପାଇ,
କପିଳାସ ଆସି, ଶିବ ପୂଜା କରି
ମୁକତି ଲଭିଲେ ସାଇଁ ।
'ଚନ୍ଦ୍ରଶେଖର ପ୍ରଭୁ ବିଶ୍ୱନାଥ
ମନ୍ଦିର', ତୋଳିଲେ ରାଜା
ପୟୋମୃତ କୁଣ୍ଡ, ମଣିକର୍ଣ୍ଣିକା
ଜନ୍ମ କୁଣ୍ଡ କଲେ, ଖଞ୍ଜା-
ଜମି ବାଡ଼ି ପ୍ରଭୁଙ୍କର,
ସେବାସି, ସୁଆର, ପଣ୍ଡା ପୁରୋହିତ
ମାଳି ସେବାକାରୀ ଦଳ ।

ବିଖ୍ୟାତ ସ୍ଥପତି, ନାମ 'ସେନାପତି
ତୁଳସୀ' ଦେଉଳ ଗଢ଼ି
ପୁରସ୍କାର ରୂପେ 'ରମ୍ଭା' ଗାଁ ତାଙ୍କୁ
ଦେଲେ ରାଜା ଶ୍ରମ ପଢ଼ି ।
କାଞ୍ଚି ଜୟ କରି 'ପୁରୁଷୋତ୍ତମ
ଦେବ' ଗଜପତି ବୀର
ପଦ୍ମାବତୀଙ୍କ ସାଥେ ଆଣିଥିଲେ
'ପାର୍ବତୀ ମୂର୍ତ୍ତି' ସୁର ।
ବସାଇଲେ ତାଙ୍କୁ ନେଇ -
ଲକ୍ଷ୍ମୀ ନୃସିଂହଙ୍କ ସାଥେ ମନ୍ଦିରରେ
କୀର୍ତ୍ତି ରୂପେ ତୋଳି ଦେଇ ।
ଶ୍ରୀଧର ସ୍ୱାମୀ, ଦଣ୍ଡୀଗୋସ୍ୱାମୀ
ବଳରାମ ଦାସ ମଠ
ଥାପିଥିଲେ ଏଥି, କପିଳମହର୍ଷି
ଆଶ୍ରମ, ଭକତଶ୍ରେଷ୍ଠ ।
ବ୍ରହ୍ମଚାରୀମଠେ ଭାଗବତଟିକା
ରଚିଲେ ଶ୍ରୀଧର ସ୍ୱାମୀ
ସାଂଖ୍ୟଦର୍ଶନ କପିଳ ସଂହିତା
ଲେଖିଲେ କପିଳ ମୁନି ।
ଏ ପୀଠ ପୁଣ୍ୟଧାରା
କାଳେ କାଳେ କୀର୍ତ୍ତି ପ୍ରଚ୍ଚର କରୁଛି
ବିଶ୍ୱ ଜଗତ ସାରା ।

ତଥ୍ୟସୂତ୍ର : 'ସେବକାଳର କଥା'

# ବୁଖାରିବାବା

ଖୁରୁଧା ଜିଲ୍ଲାର କାଇପଦର
ଭାରତ ବିଖ୍ୟାତ ନାଁ ତାହାର
ମିଳନ ଭୂଇଁ,
ସବୁ ଧରମର ସମସ୍ତେ ଆସନ୍ତି
ମନ କାମନାର ପୂରଣ ପାଇଁ ।

ଏଇପୀଠେ ଥିଲେ ଦି'ଜଣ ସାଧୁ
ଜଣେ ମୁସଲିମ୍ ଆରେକ ହିନ୍ଦୁ
ଅଭେଦ ପ୍ରୀତି,
ଦିହିଁଙ୍କର ଥିଲା ଅତି ନିବିଡ଼ତା
କାୟା ଛାୟା ପରି ଚଳନ୍ତି ନିତି ।

ହିନ୍ଦୁବାବା ହିନ୍ଦୁ ନିୟମ ମାନି
ପୂଜା ଆରାଧନା କରନ୍ତି ପୁଣି,
ମୁସଲିମ୍ ସାଧୁ ବୁଖାରି ବାବା
ଇସଲାମ୍ ନୀତି ପାଳନ୍ତି ସଦା ।
ଡାକନ୍ତି ଆଲ୍ଲା,
ନମାଜ ପଢ଼ନ୍ତି ବହୁବାର ଦିନେ
ସେ ଭାବଭୋଳା ।
ପାଖାପାଖି ଦୁହେଁ ପୀଠରେ ବସି
ଉପାସନା କରି, ହୁଅନ୍ତି ଖୁସି,
ସରିଲେ କାମ
ଭିକ୍ଷା କରିବାକୁ ସେ ଲଲି ଯାଆନ୍ତି
ଗ୍ରାମକୁ ଗ୍ରାମ ।

ଦୁଇ ଭାଇ ପରି ସେ ଦୁଇ ସାଧୁ
ଏକାଠି ଚଳନ୍ତି, ଅନ୍ତର ମଧୁ,
କିଏ ନ ଯାଆନ୍ତି କାହାକୁ ଛାଡ଼ି
ଗୋଟିଏ ପୀଠରେ ଥାଆନ୍ତି ପଡ଼ି ।
କେତେଯେ ଭକତ ଆସନ୍ତି ତହିଁ
ଭେଦ ଭାବ ମନେ କାହାର ନାହିଁ ।
ସରବେ ଏକ,
ହେଲେ ହେଉ ଅବା ଧର୍ମ ଅନେକ ।

ଦୁଇ ସାଧୁଙ୍କର ମହାପ୍ରୟାଣ
ହୋଇଥିଲା ତହିଁ ଗୋଟିଏ ଦିନ,
ସମାଧି ଗଢ଼ିଲେ ଭକତମାନେ ପାଖାପାଖି ତହିଁ-
ଶ୍ରଦ୍ଧା ଭକତିରେ ମନ ଧିଆନେ ।

ଗଢ଼ା ହେଲା ତହିଁ ମନ୍ଦିର ଏକ
ସମାଧି ଉପରେ, ରହିଲା ଟେକ,
ଉଠିଲା ବାନା
'ବୁଖାରି ବାବାଙ୍କ ମନ୍ଦିର' ବୋଲି ହୋଇଲା ଘେନା ।

ଜଣେ ମୁସଲିମ୍ ପୂଜକ ତହିଁ
ମନ୍ଦିର ସେବା କରିବା ପାଇଁ
ଥାଆନ୍ତି ସଦା
ଯିଏ ଯେଉଁ ମାର୍ଗେ କରନ୍ତି ପୂଜା ।

କିଏ କରୁଥାନ୍ତି ନମାଜ ବସି
ଧୂପ ଦୀପ ଦାନ କେ କରେ ପଶି,
କିଏ ପଢୁଥାନ୍ତି କୋରାନ ତହିଁ
ଗୀତା ପଢୁଥାନ୍ତି ଆଉ କେ ନେଇ ।
ବାରଣ ନାହିଁ
ଏ ବୁଖାରି ପୀଠ ପବିତ୍ର ଭୂଇଁ ।

ଆସନ୍ତି ପୂଜକ ଚାମର ଢାଳି
ଭକତଙ୍କ ଶିରେ ଆଶିଷ ଢାଳି,
ହିନ୍ଦୁ ମୁସଲିମ୍ ଶିଖ ଓ ସାଇ
ସମସ୍ତେ ଆସନ୍ତି ଏ ପୀଠେ ଧାଇଁ
ମନ କାମନା
ପୂରଣ କରିବା ପାଇଁ ଆସିଥାନ୍ତି
ନ ଥାଏ ମନା ।
କାଗଜରେ ଲେଖି କେ ମନକଥା
ବାବାଙ୍କୁ ଜଣାଏ ତା' ମନ ବଥା,
ମନ ଅଭିଳାଷ ହେବ ପୂରଣ
ସତ୍ୟପୀର ପିଠେ ପଶି ଶରଣ
ବୁଖାରି ବାବା
ଢାଳି ଦେବେ ତାଙ୍କ ଅମାପ କୃପା ।
କାଇ ପଦରର ବୁଖାରି ପୀଠ
ସର୍ବଧର୍ମ ସମନ୍ୱୟର ବାଟ,
ରଖିଛି ଟେକ
ହିନ୍ଦୁ, ମୁସଲିମ୍, ଶିଖ ଖ୍ରୀଷ୍ଟିୟାନ
ସରବେ ଏକ ।

# ସୋମନାଥ ସିଂହ

ବ୍ରିଟିଶ୍ ଅମଳେ      ସୋମନାଥ ସିଂହ
ଥିଲେ ଅନଗୁଳ ରାଜା
ପ୍ରଚଣ୍ଡ ପ୍ରତାପୀ      ସେ ପ୍ରଜାବତ୍ସଳ
ପୁତ୍ର ସମ ପାଳି ପ୍ରଜା-
ରଖିଲେ ଅମର କୀର୍ତ୍ତି,
ସୈନ୍ୟବଳ ଥିଲା      ଅତ୍ୟନ୍ତ ପ୍ରବଳ
ଥରଇ ଅରାତି ଛାତି ।

ଓଡ଼ିଶା ଦଖଲ      କରିନେଲେ ଆସି
ଇଂରେଜ ସେନା ଦଳ
ଗଡ଼ଜାତ ରାଜ୍ୟ      ଜୟ କରିବାକୁ
ପ୍ରସ୍ତୁତ ସେନାବଳ,
ଭୟଭୀତ ରାଜାମାନେ
ଏକଜୁଟ ହେବେ      ବ୍ରିଟିଶ ବିରୁଦ୍ଧେ
ଭାବି ପାରିଲେନି ମନେ ।

ଦୁର୍ବଳ ରାଜା      ଶରଣ ପଶିଲେ
ଗୋରା ସରକାର ପାଶେ
କରଦ ରାଜ୍ୟ      ରୂପେ ନିଜ ରାଜ୍ୟ
ଶାସନ କରିଲେ ତୋଷେ
ରାଜା ସୋମନାଥ ସିଂହ,
ପରାଧୀନତାକୁ      ସ୍ୱୀକାର କଲେନି
ଛାଡ଼ି ସେ ରାଜ୍ୟ ମୋହ ।

କ୍ରୋଧ କମ୍ପିତ          ଗୋରା ସରକାର
ଦୁର୍ଦାନ୍ତ ରାଜାଟାକୁ
ହଟାଇ ପାରିଲେ          ଚପାଇ ରଖିବ
ଆଉ ସବୁ ରାଇଜକୁ ।
କୂଟ କପଟର ଜାଲ -
ବିସ୍ତାର କଲା,          ରାଜପୁତ୍ରଙ୍କୁ
କରିବ ସେ ମଙ୍ଗୁଆଳ ।
"ଆମକୁ ସାହାଯ୍ୟ          କର ଯୁବରାଜ
ରାଜା ହେବେ ଗାଦିଚ୍ୟୁତ
ତୁମ ପଦେ ଆମେ          ସମରପି ଦେବୁ
ସିଂହାସନ ରାଜପଦ
ହେବ ଅନଗୁଳ ରାଜା
ଆମ ବନ୍ଧୁ ରୂପେ          ମହାଆନନ୍ଦରେ
ପାଳିବ ତୁମର ପ୍ରଜା ।

ଯୁବରାଜ ବୀର          ଲୋକନାଥ ସିଂହ
ଭୁଲିଗଲେ ଭେଳିକିରେ
ବୁଦ୍ଧି, ବିଦ୍ୟା,ନୀତି          ବିବେକ ହରାଇ
ପଡ଼ିଲେ ଫିରିଙ୍ଗୀ ଜାଲେ
ହୋଇଲେ ପିତାଙ୍କ ଅରି
କ୍ଷମତା ଲାଳସା          ଅନ୍ଧ କଲା ତାଙ୍କୁ
ଲଭିବାକୁ ରାଜ ଶିରୀ ।

ପିତୃଦ୍ରୋହୀ ପୁତ୍ର ବ୍ରିଟିଶ ହାତରେ
ପିତାଙ୍କୁ ଧରାଇ ଦେଲା
କିଏ ଭାବିଥିଲା ଅଣ୍ଟିଛୁରୀ ହୋଇ
ତଣ୍ଟିକାଟି ଦେବ ଭଲା ।
ବନ୍ଧା ହୋଇଗଲେ ରାଜା
ରାଜଦ୍ରୋହ ଦଣ୍ଡେ ଦଣ୍ଡିତ ହୋଇଲେ
ପାଇଲେ କଠିନ ସଜା ।
ଲୋକନାଥ ସିଂହ ସିଂହାସନ ପାଇଁ
ଉଠାଇଲେ ତାଙ୍କ ଦାବି
ଇଂରେଜ ଶାସକ ପ୍ରତ୍ୟାଖ୍ୟାନ କଲେ
ଅବିଶ୍ୱସ୍ତ ତାଙ୍କୁ ଭାବି ।
କହିଲେ, ଅଯୋଗ୍ୟ ତୁମେ,
ପୁତ୍ର ହୋଇ ପିତା ଅନ୍ତକ ସାଜିଲ
କଳଙ୍କ ଲଗାଇ ନାମେ ।
ନିଜ ପିତାଙ୍କର ଯେ ନୁହେଁ ବିଶ୍ୱସ୍ତ
ହେବକି ବିଶ୍ୱସ୍ତ କା'ର ?
ବ୍ରିଟିଶ ଶାସନ କଳଙ୍କିତ ହାତେ
ଦେବନି, ରାଜ୍ୟଭାର ।
ଶାସନ କରିବୁ ଆମେ,
ଆଜିଠାରୁ ହେଲା ଖାସ୍ ମାହାଲଏ'
ପାଉଣା ପାଇବ ତୁମେ ।
ମୁକ୍ତ ଜୀବନ ଉପଭୋଗ କର ବୀର
ତୁମ ସହଯୋଗ ପାଇଁ ଏ ପୁରସ୍କାର !

# ବିଦେଶୀ ନାବିକଙ୍କ ଘଡ଼ି

ଫ୍ରାନ୍ସ ଦେଶର ମହାନ ନାବିକ
ଭାରତ ଭ୍ରମଣ ପଥେ
ଜାହାଜ ଚଳାଇ ଆସିଥିଲେ ଏଥି
ଦୃପ୍ତ ସାଗର ସ୍ରୋତେ ।
ଆଣିଥିଲେ ସାଥେ ଅନୁପମ ଏକ
'ବିରାଟ କାନ୍ଥ ଘଡ଼ି'
ପଣ୍ଡିଚେରିର ଚର୍ଚ୍ଚରେ
ଉପହାର ଦେବେ ବୋଲି ।
ଯୀଶୁଖ୍ରୀଷ୍ଟଙ୍କ ଭକ୍ତ ପ୍ରବର
ନାବିକ ଉଦାର ମନା
ସବୁଧର୍ମରେ ସମ୍ମାନ ଥିଲା
ବିଭେଦେ ନୁହନ୍ତି ବଣା
ଜାଣିଥିଲେ ସିଏ ମତନେଇ ପଥ ଗଢ଼ା
ସବୁ ପଥ ଯାଇ ମିଳିତ ହୁଅନ୍ତି
ସେ ମହାସାଗର ବେଳା ।
ଉତ୍ତାଳ ସେଇ ସାଗର ବୁକୁରେ
ଜୁଆର ସାଥିରେ ଲଢ଼ି
ଚଳିଛି ଜାହାଜ, ହଠାତ୍ ଶୁଭିଲା
ଝଡ଼ ତୋଫାନର ରଡ଼ି ।

ସମୁଦ୍ର ମଝିରେ ଝଡ଼ ବତାଶରେ
ଟଳ ମଳ ହେଲା ପୋତ
ନାବିକ ସହିତ ଯାତ୍ରୀ ସକଳ
ଚିନ୍ତିତ ଭୟଭୀତ ।
ଦେଖିଲେ ନାବିକ, ଜଣେ ଧ୍ୟାନରତ,
ଚିତ୍ତି ସେ 'ଚକାଡ଼ୋଳା'
"ରକ୍ଷାକର ହେ ଜଗତର ନାଥ !
ନ ହେଲେ ବୁଡ଼ିଲା ଭେଳା ।
ଆତୁରେ ଡାକନ୍ତି ସିଏ,
ତୁମ ବିନା ପ୍ରଭୁ ଏ ମହିମଣ୍ଡଳେ
ବିପଦୁ ତାରିବ କିଏ ?"

ବିକଳ କଣ୍ଠେ ଡାକିଲେ ନାବିକ
ଜଗନ୍ନାଥ ପ୍ରଭୁ ଯୀଶୁ
ଏ ଘୋର ବିପଦୁ ତ୍ରାଣକର ବାରେ
ସଙ୍କଟ ପରିବେଶୁ ।
ଥମୁ ସମୁଦ୍ର ଝଡ଼,
ହେ ! ଜଗତ ଠାକୁର ବଡ଼ ।
ଆଖି ପିଛୁଳାକେ ଥମି ଥମିଗଲା
ଝଡ଼ ତାଣ୍ଡବ ଲୀଳା
ଶାନ୍ତ ହୋଇଲା ସାଗର ବକ୍ଷ
ତୋଳି ତରଙ୍ଗ ମାଳା ।
ପଣ୍ଡିଚେରିକୁ ନ ଯାଇ ଜାହାଜ
ଚଳିଲା ଶ୍ରୀକ୍ଷେତ୍ର ଧାମେ

ତରୀରୁ ଓହ୍ଲାଇ ଲୋଟିଲେ ନାବିକ
ପବିତ୍ର ବେଳାଭୂମେ ।
ବାଲୁକା ଶଯ୍ୟା ପରେ,
ପ୍ରଭୁ ଜଗନ୍ନାଥ ! ପ୍ରଭୁ ଜଗନ୍ନାଥ !
ଡାକୁଥାନ୍ତି ବିକଳରେ ।
ଭକ୍ତି ଉପହାର ଘଡ଼ିଟିକୁ ଧରି
ଭକତ ନାବିକ ଉଭା
ଅର୍ପଣ କଲେ ପ୍ରଭୁ ଶ୍ରୀପୟରେ
ଆହା କି ସେ ମନଲୋଭା !
ଘେନ ହେ ଜଗତନାଥ,
କି ଦେଇ ପାରିବ ଏ ଦୀନ ନାବିକ
ଶ୍ରୀପଦରେ ସମର୍ପିତ ।
ଫେରିଗଲେ ପୁଣି ସମୁଦ୍ର ପଥରେ
ପୋତ ଚଳି ଲକ୍ଷ୍ୟ ପଥେ
ସୁମରଣା କରି ଶ୍ରୀ ଜଗନ୍ନାଥଙ୍କୁ
ଚଳିଲେ ଆନନ୍ଦ ଚିତ୍ତେ ।

ଆଜି ଶ୍ରୀକ୍ଷେତ୍ରରେ ନୀଳାଦ୍ରିବିହାରେ
ବିରାଜିତ ସେହି ଘଡ଼ି
ଟିକ୍ ଟିକ୍ ବାଜି 'ଜଗନ୍ନାଥ' ଭଜି
ଟାଳଇ ସମୁଦ୍ର ରଡ଼ି
କରୁଛି ମହିମାଗାନ,
ତୁମ ଶ୍ରୀପୟରେ ପ୍ରେମ ଭକତିରେ
ଆଶ୍ରିତ ଜଗତ ଜନ ।



ବି.ଦ୍ର : 'ଖ୍ରୀଷ୍ଟିୟାନ ନାବିକଙ୍କ ଜଗନ୍ନାଥ ପ୍ରେମ' ଶୀର୍ଷକ ଏକ ସମ୍ବାଦରୁ ଏହି ତଥ୍ୟ ଗ୍ରହଣ କରାଯାଇଛି । ତା ୨୫/୬/୨୦୦୬ରେ ସମାଜରେ ଏ ସମ୍ବାଦ ପ୍ରକାଶିତ ।



## ଶ୍ରୀ ନରସିଂହ ମିଶ୍ର

ଜନ୍ମ : ତା ୨/୦୭/୧୯୩୨

ଗ୍ରାମ : ମହିଧରପଡ଼ା, ଜିଲ୍ଲା : ଅନଗୁଳ

ଶ୍ରୀ ନରସିଂହ ମିଶ୍ର ଓଡ଼ିଆ ସାହିତ୍ୟର ଏକ ଚର୍ଚ୍ଚିତ ସାରସ୍ୱତ ପ୍ରତିଭା । ସେ ଜଣେ ପ୍ରତିଷ୍ଠିତ ଔପନ୍ୟାସିକ ହେଲେ ମଧ ମୁଖ୍ୟତଃ ଜଣେ କବି । ତାଙ୍କର କବି ଜୀବନର ଆଦ୍ୟ ଅର୍ଘ୍ୟ ହେଉଛି "ସ୍ମୃତିସ୍ୱପ୍ନ" । ଦ୍ୱିତୀୟ ମୌଳିକ କବିତା ପୁସ୍ତକ, "ହୁଲିଡଙ୍ଗାର କବିତା" ଅନ୍ୟ ଏକ ଅନବଦ୍ୟ କୃତି ।

ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କ 'ଗୀତାଞ୍ଜଳି' ଏବଂ ତାଙ୍କର ନିର୍ବାଚିତ କବିତାକୁ ନେଇ, ଠାକୁରଙ୍କ ଫୁଲ'କୁ ଓଡ଼ିଆ ଭାଷାରେ ଅନୁବାଦ କରି ଶ୍ରୀ ମିଶ୍ର ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ଦ୍ୱାଦଶ ଶତାବ୍ଦୀର ସଂସ୍କୃତ କବି ଭାନୁଦତ୍ତ ମିଶ୍ରଙ୍କର ରସାଳକାବ୍ୟ 'ରସମଞ୍ଜରୀ'ର ଓଡ଼ିଆ ଅନୁବାଦ, ଶ୍ରୀ ମିଶ୍ରଙ୍କର ଏକ ରସମୟ କଳାତ୍ମକ ସୃଷ୍ଟି ।

'କିଂବଦନ୍ତି କବିତା' ବିବରଣୀ କାବ୍ୟ ପରମ୍ପରାରର ଏକ ମୂଲ୍ୟବାନ ଆଲେଖ୍ୟ । ଗୀତିକବିତାର ଅବକ୍ଷୟ ଯୁଗରେ, ଏପରି ଏକ ଗୀତିମୟ ରସାପ୍ଲୁତ ଅର୍ଘ୍ୟ, ପାଠକୀୟ ରୁଚି ସଂଚାର କରିବବୋଲି ଆମେ ଆଶାକରୁ ।